# ପ୍ରାକ୍-କଥନୀ

'କବିତା-୧୯୭୧' ପରେ 'କବିତା-୧୯୭୪' ପ୍ରକାଶ ପାଉଛି । ମଝିରେ ତିନି ବର୍ଷର ବ୍ୟବଧାନ । ସୂଚୀପତ୍ରରୁ ଜଣାଯିବ ଯେ ଏଇ ତିନି ବର୍ଷ ମଧ୍ୟରେ ଲିଖିତ ଏବଂ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ମୋର ୫୦ଟି କବିତା ଏଇ କାବ୍ୟ-ସଂକଳନର ଅଂତର୍ଗତ ବିଷୟ । କବିତାର ଭୂମିକା କବିତା ନିଜେ, ତେଣୁ ଆଜ କୌଣସି ଭୂମିକାର ଦରକାର ନାଇ । ତଥାପି କେଉଁଠି କେଉଁଠି ଟିକିଏ ସ୍ପଷ୍ଟୀକରଣର ଅବକାଶ ରହିଛି । କବିତାର ପୃଷ୍ଠଭୂମି ନ ବୁଝିଲେ କବିତାର ଅଂତଃସ୍ୱର ବୁଝିବା କଠିନ । ପଟବିସ୍ତୃତହିଁ ସାହିତ୍ୟ-ବିଗ୍ରହର ମୂଳ-ସୂତ୍ର । ତେଣୁ ଏ କାବ୍ୟ-ସଂକଳନଟିର ପ୍ରେକ୍ଷାପଟ ଉପରେ ଟିକିଏ ଆଲୋକପାତ କରିବା ସେପରି ଦୋଷାବହ ହେବ ନାଇ ବୋଲି ମନେକରେ ।

୧୯୭୨ ମସିହାରେ ମୋର ସମାଲୋଚନା ପୁସ୍ତକ 'ସାହିତ୍ୟ-ବିଗ୍ରହ ଓ ମୂଲ୍ୟବୋଧ' ପ୍ରକାଶ ପାଇବା ପରେ କେତେକ ସଂପୃକ୍ତ ମହଲରେ ଯେଉଁ ମକ୍ଷିକାଗୁଂଜନ ଓ ନେପଥ୍ୟ-କୋଳାହଳର ସୃଷ୍ଟି ହୋଇଥିଲା ତାହା ଗତ ବର୍ଷ ମଝିରେ ମୋର 'ସାହିତ୍ୟରେ ମୂଲ୍ୟବୋଧ' ପ୍ରକାଶ ପାଇବା ପରେ ଶ୍ୱାନ-ଚିତ୍କାରରେ ପରିଣତ ହୋଇଛି । ଏଇ ପେଶାଦାର ଅପନିଂଦୁକମାନଂକର ଏକମାତ୍ର କାର୍ଯ୍ୟ ହୋଇଛି ମୋର ସାହିତ୍ୟକର୍ମକୁ ଛାଡ଼ି ମୋର ବ୍ୟକ୍ତିଗତ ଜୀବନ ଏବଂ ଏପରିକି ମୋ ପାରିବାରିକ ଜୀବନକୁ ନେଇ ସ୍ୱନାମୀ ବେନାମୀ ପ୍ରବଂଧାଦି ଲେଖିବା, ସାହିତ୍ୟ-ସଭାମାନଂକରେ ଆଶୁ କବିତା ରଚନା କରି ପଢ଼ିବା ଏବଂ ଆଲୋଚ୍ୟ ବିଷୟକୁ ଛାଡ଼ି ମୋତେ ଗାଳି ଦେଇ ବକ୍ତୃତା ଦେବା ଇତ୍ୟାଦି ଇତ୍ୟାଦି । ଏମାନଂକ ଚିତ୍କାରକୁ କାନ ଦେବା ପାଇଁ ମୋର ଆଦୌ ସମୟ ନାଇ ଜାଣି ସୁଦ୍ଧା ସେମାନେ ସେଥିରୁ ବିରତ ହେଉ ନଥିବା ଆଶ୍ଚର୍ଯ୍ୟର କଥା । ତାର କାରଣ, ସେମାନଂକୁ ଉସୁକାଇବା ପାଇଁ ଲୋକର ଅଭାବ ନାଇ । ଗତ ବର୍ଷ ଏଇ ସୀମା ଟପି ଏକ ସାହିତ୍ୟସଭାରେ ଏସିଡ୍ ବୋତଲ

ମଧ୍ୟ ଫିଂଗା ଯାଇଥିଲା ଏବଂ ଅନ୍ୟ କେତେକଂକ ସହ ମୁଁ ମଧ୍ୟ ଆହତ ହୋଇଥିବା କଥା ସମସ୍ତେ ଜାଣଂତି । ଏଭଳି ପାଗଳାମିକୁ ଦେଶ ବିଦେଶରେ ତୀବ୍ର ନିଂଦା କରାଯାଇଥିଲା । ମାତ୍ର ଆଶ୍ଚର୍ଯ୍ୟର କଥା ଆମ ଓଡ଼ିଶାରେ ଏ ପ୍ରକାର ଅସାମାଜିକ ବ୍ୟକ୍ତିଂକ କୁହାପ୍ରସ୍ତର ପାଇଁ ପୃଷ୍ଠା ପରେ ପୃଷ୍ଠା ଯୋଗାଇବା ପାଇଁ ଲୋକର ଅଭାବ ନାଇ । ଗତବର୍ଷ କଟକରେ ଏକ ସାହିତ୍ୟସଭାରେ ଯେଉଁ ଭୌତିକ କାଂଡ ଘଟିଗଲା * ତହିଁର ତୀବ୍ର ନିଂଦା କରି ସୁଦୂର ପାଟନାରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ପାଟନା ବିଶ୍ୱବିଦ୍ୟାଳୟର ଏକଦା କୁଳପତି ଡ଼: ବଳଭଦ୍ର ପ୍ରସାଦଂକ ଭଳି ବ୍ୟକ୍ତି ମଧ୍ୟ ଏକ ଚିଠି ପ୍ରକାଶ କଲେ । ମାତ୍ର ଆମ ଓଡ଼ିଶାର କେହି କେହି କୁଳବୃଦ୍ଧ ଏଇ ସବୁ ପେଶାଦାର କୁହାଜୀବୀଂକର ପ୍ରଧାନ ପ୍ରୋତ୍ସାହକ ଓ ପ୍ରେରଣାଦାତା ହୋଇ ବସିଛଂତି । ଏହାକୁ ଆମ ଜାତୀୟ ଚରିତ୍ରର ଏକ ବିଡ଼ଂବନା ଛଡ଼ା ଆଉ କଣ କୁହାଯିବ ? ଓଡ଼ିଶାର ସବୁ କ୍ଷେତ୍ରରୁ ବିତାଡ଼ିତ ଏବଂ ସବୁ କ୍ଷେତ୍ରକୁ ସମୂହ ଦୂଷିତ କରି ସାରିଥିବା ଏଇ ବିଡ଼ଂବିତ ବ୍ୟକ୍ତିତ୍ୱ ବର୍ତ୍ତମାନ ଶେଷ ଜୀବନରେ ସାହିତ୍ୟକୁ ଆଶ୍ରା କରି ବସିଛଂତି । ମାତ୍ର ଯେପରି ଦେଖା ଯାଉଛି ସାହିତ୍ୟ କ୍ଷେତ୍ରକୁ ମଧ୍ୟ ସଂପୂର୍ଣ୍ଣ ଦୂଷିତ ଓ ନଷ୍ଟଭ୍ରଷ୍ଟ ନ କରିବା ଯାଏଁ ତାଂକର ଶାଂତିରେ ମହାନିଦ୍ରା ହେବ ନାଇ । ସାହିତ୍ୟକୁ ଏକ ବୃଷଭ ମିଳନରେ ପରିଣତ କରି ପ୍ରତିବର୍ଷ ଲେଖକମାନଂକୁ ଡାକି ନେଇ କେତେକ ନିର୍ଦ୍ଦିଷ୍ଟ ପୋଷା ଲୋକଂକ ଦ୍ୱାରା ଗାଳିଗୁଜବ ଦିଆଇବା, ମାଡ଼ ମରାଇବା (ଯେପରି ଗତବର୍ଷ କବି ମାନସିଂକ ଭାଗ୍ୟରେ ଘଟିଥିଲା) ଏବଂ ସେମାନଂକ ନାଆଁରେ ଅଶ୍ଲୀଳ କବିତା ଲେଖାଇ ସଭାରେ ପଢ଼ାଇବା ଇତ୍ୟାଦି ଯାବତୀୟ ଜଘନ୍ୟ କାଂଡ ଏ ମହାଶୟଂକ ନେତୃତ୍ୱରେ ସଂଘଟିତ ହୋଇ ଆସୁଅଛି । ଓଡ଼ିଶାର ଏଇ ପରିଚିତ ଭସ୍ମାସୁରଂକ ତତ୍ତ୍ୱାବଧାନରେ ସମସ୍ତ ପ୍ରକାର ନାଶକତାମୂଳକ କାର୍ଯ୍ୟ ସାହିତ୍ୟ କ୍ଷେତ୍ରରେ ଚାଲିଥିବା ସମସ୍ତଂକ ପକ୍ଷରେ ଘୋର ଦୁର୍ଭାଗ୍ୟର ବିଷୟ ସଂଦେହ ନାଇ ।

---

* ପରେ ଶୁଣିବାକୁ ପାଇଲି ମୋ' ଆଖିରେ ଏସିଡ୍ ଫୋପାଡ଼ି ଚିରଦିନ ଅଂଧ କରିଦେବାହିଁ ଥିଲା କୁଆଡ଼େ ଦୁର୍ବୃତ୍ତମାନଂକର ଲକ୍ଷ୍ୟ । ସେଦିନ କବିତା ପାଠୋତ୍ସବରେ ଅନେକ ଟିଣ ଚୌକି ମଧ୍ୟ ଦର୍ଶକମାନଂକ ଉପରକୁ ଫିଂଗା ଯାଇଥିଲା ଏବଂ ସଭା ଭାଂଗି ଦେବା ପାଇଁ ଆରଂଭରୁ ଚେଷ୍ଟା କରାଯାଇଥିଲା । ଫଳରେ କଟକ ଟାଉନହଲର ବହୁ ଟିଣଚୌକି ଭାଂଗି ଯାଇଥିଲା । ଏ ସଂକ୍ରାଂତରେ ପୁଲିଶ ଋଷି ସିଂକୁ ଗିରଫ୍ କରିଥିବା କଥା ସଂବାଦପତ୍ରମାନଂକରେ ପ୍ରକାଶ ପାଇଥିଲା । ଏତିକି ନୁହେ ମଝିରେ ମଝିରେ ମୋତେ ଖୁଣ୍ କରିବା ପାଇଁ ଧମକ-ଚିଠିମାନ ମଧ୍ୟ ମୁଁ ପାଇଥାଏ । ସ: ଖ:

• ନଅ ଦଶ ବର୍ଷ ବୟସ ହେବା ଦିନୁ ମୋର କବିତାମାନ ପ୍ରଥମେ 'ସଂଗ୍ରାମ' ଓ 'ନବୀନ' ଏବଂ ପରେ ଅନ୍ୟାନ୍ୟ ପତ୍ର ପତ୍ରିକାମାନଂକରେ ପ୍ରକାଶିତ ହୋଇ ଆସୁଅଛି । ଦୀର୍ଘ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି ନିରବଚ୍ଛିନ୍ନ ସାହିତ୍ୟସେବା କଲା ପରେ ଆମ ଦେଶରେ କିପରି ପୁରସ୍କାର ମିଳେ ତାହା ଏଥିରୁ ପ୍ରମାଣିତ ହେବ ।

ମୋର କହିବାର କଥା, ସାହିତ୍ୟ-ସମାଲୋଚନା ବା ଗବେଷଣା କ୍ଷେତ୍ରରେ ତଥ୍ୟକୁ ତଥ୍ୟଦ୍ୱାରା ଖଂଡନ କରିବା କିଛି ଅନ୍ୟାୟ ନୁହେଁ । ଭିନ୍ନମତ ଏବଂ ବିରୋଧୀ ମତ ମଧ୍ୟ ସାହିତ୍ୟରେ ସବୁବେଳେ ରହିଥାଏ ଏବଂ ରହିବା ଉଚିତ । ତେଣୁ ଯେଉଁମାନେ ଏ ପଂଥା ଛାଡ଼ି ବ୍ୟକ୍ତିଗତ ଆକ୍ରମଣ ଦ୍ୱାରା ବା କୁତ୍ସା ପ୍ରଚାର ଆଦି ସାହିତ୍ୟେତର ପଂଥାରେ ମୋର ପ୍ରତିରୋଧ କରିବକୁ ଚାହାଂତି ସେମାନଂକର ଅପଚେଷ୍ଟା ନିଶ୍ଚୟ ପଂଡ ହେବ । ଯେଉଁମାନେ ମୋତେ ଜାଣଂତି ସେମାନେ ଏକଥା ମଧ୍ୟ ଭଲଭାବେ ଜାଣଂତି ।

ଆମ ଦେଶରେ କାଳିଶି ଲାଗିବା ବା ଲଗାଇବା କିଛି ନୂଆ କଥା ନୁହେ । ଏଇ ଦାରିଦ୍ର୍ୟ ଓ ବେକାରି ପ୍ରପୀଡ଼ିତ ଦେଶରେ ସ୍ୱଳ୍ପ ବ୍ୟୟରେ ଏପରି କେତେ ଜଣ ଲୋକ ମିଳିଯାଂତି ଯେଉଁମାନେ କି ଯେ-କୌଣସି ଲୋକ ନାମରେ ଯେ କୌଣସି ପ୍ରକାର କୁତ୍ସା ଅକାତରେ ଅନର୍ଗଳ କରି ପାରିବେ । ଏମାନେ ସତରେ ବଡ଼ ଦୟନୀୟ ଜୀବ । ଯେଉଁମାନେ ଏଇ ମୁଷ୍ଟିମେୟ କୁତ୍ସାଧର୍ମୀ-ମାନଂକ ପାଇଁ କିଛି କର୍ମସଂସ୍ଥାନ କରି ଦିଅଂତି ସେମାନେ ସେଇ କାରଣରୁ ଧନ୍ୟବାଦର ପାତ୍ର । ଆମ ସାହିତ୍ୟରେ ଆଜି ସମାଲୋଚନା କହିଲେ ବରଦା କୁତ୍ସା ପ୍ରଚାରହିଁ ବୁଝାଏ ।

କି ପ୍ରାଚୀନପଂଥୀ କି ନବ୍ୟ ସାହିତ୍ୟିକ ଉଭୟ ମହଲର କେତେକ ବ୍ୟକ୍ତି ସଂପ୍ରତି ମୋ ବିରୁଦ୍ଧରେ ଏକ ଚକ୍ରବ୍ୟୂହ ରଚନା କରିଥିବାର ଦେଖା ଯାଉଛି । ସେଇପରି ଏ ଉଭୟ ମହଲରେ କେତେକ ବଂଧୁ ମୋର ସମର୍ଥକ ରୂପେ ମଧ୍ୟ ଛିଡ଼ା ହୋଇଛଂତି । ମାତ୍ର ଏ ଉଭୟ ପ୍ରକାର ଲୋକ, ସେ ବଂଧୁ ହୁଅଂତୁ କି ବିରୋଧୀ ପକ୍ଷ ହୁଅଂତୁ, ସେ ମଧ୍ୟବିତ୍ତସୁଲଭ ସୁବିଧାବାଦର ଆଶ୍ରୟୀ ଏ ବିଷୟରେ ମୋର କୌଣସି ସଂଦେହ ନାହିଁ । ମୋ' ପକ୍ଷରେ ସବୁଠାରୁ ବଡ଼ ପ୍ରଶ୍ନ ହେଉଛି ନିଜ କେଂଦ୍ରରେ ନିଜେ ଅଟଳ ରହିବା । ମୋ' ବିଚାରରେ ସାହିତ୍ୟ କେବେ ଚାଲାକିରେ ହୁଏ ନାହିଁ । ସେଥିପାଇଁ ଲୋଡ଼ା ନିରଂତର ଜ୍ୱଳନ ଏବଂ ନିରଂତର ଦହନ । ସତ୍ତାର ସେଇ ତୀବ୍ର ଯଂତ୍ରଣା ଭିତରୁହିଁ ମହାନ ସାହିତ୍ୟର ସୃଷ୍ଟି ହୁଏ । ତେଣୁ ଜ୍ୱଳନର ସେଇ ତୀବ୍ର ତପସ୍ୟାରେ କିଏ ଶତ୍ରୁ କିଏ ମିତ୍ର ତାହା ସତରେ ଅବାଂତର । ଏମାନେ ସମସ୍ତେ ହେଲେ ସାହିତ୍ୟରେ ସୌଦାଗର ଶ୍ରେଣୀର

ଲୋକ । ସାହିତ୍ୟ ପାଇଁ ଜୀବନରେ ସବୁ କିଛି ତ୍ୟାଗ କରିବାର ଚରମ ପଦକ୍ଷେପ ବା ସବୁ କିଛି ମୁକାବିଲା କରିବାର ମହତ୍ ସଂକଳ୍ପ ଏମାନଂକଠାରୁ ଆଶା କରାଯାଇ ନପାରେ ।

## ପ୍ରାଚୀନ ସାହିତ୍ୟର ପ୍ରେକ୍ଷାପଟ

କେତେକ ମତାଂଧ ପ୍ରାଚୀନପଂଥୀଂକର ଅଭିଯୋଗ ଯେ ମୁଁ କାହିଁକି ବାପ୍‌ଟିଷ୍ଟ ମିସନର ପାଦ୍ରୀମାନେ ସମସ୍ତଂକୁ ଖ୍ରୀଷ୍ଟାନ କଲା ପରି ସବୁ ମହାପୁରୁଷଂକୁ ସ୍ୱର୍ଗରୁ ଧରି ଆଣି ଓଡ଼ିଆ କଲି ନାଇ । ମୁଁ କାହିଁକି ସବୁ ପୂର୍ବଭାରତୀୟ ଭାଷା-ସାହିତ୍ୟ ଓ ଓଡ଼ିଆ ବର୍ଣ୍ଣମାଳାର ଉଦ୍‌ଭବ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀ ଆଡ଼କୁ ହୋଇଛି ବୋଲି ବିଶେଷଜ୍ଞ ମତକୁ ମାନି ନେଇ ଅଷ୍ଟମ-ନବମ ଶତାବ୍ଦୀରୁ ଓଡ଼ିଆ ସାହିତ୍ୟ ଓଡ଼ିଆ ଲିପିରେ ଲିଖିତ ହୋଇ ଆସୁଛି ବୋଲି ସେମାନଂକ ସଂଗେ ସ୍ୱର ମିଳାଇ କହିଲି ନାଇ । ସେମାନଂକ ଦୃଷ୍ଟିରେ ମୋର ଅପରାଧ ହେଲା ମୁଁ ଦ୍ୱାଦଶ ଶତକୀୟ ଓଡ଼ିଶା ସହିତ (ଯେତେବେଳେ କି ଓଡ଼ିଶାରେ Heroic Age ବା ବୀରତ୍ୱର ଯୁଗ ପ୍ରଚଳିତ ଥିଲା ଏବଂ ଅବକ୍ଷୟର ସ୍ପର୍ଶ ଲାଗି ନଥିଲା) ଜୟଦେବଂକୁ ସଂପୃକ୍ତ କରି ପାରିଲି ନାଇ । ସେ ଯୁଗ ଥିଲା କୋଣାର୍କ ମଂଦିର ତିଆରିର ପ୍ରାକ୍‌କାଳ—ଯେତେବେଳେ କି ସାମଂତପ୍ରଥା ତଥାପି ବି ସୃଜନଶୀଳ ଥିଲା, ସେଥିରେ ଅବକ୍ଷୟର ପର୍ଯାୟ ଆରଂଭ ହୋଇ ନ ଥିଲା । ଦ୍ୱାଦଶ ଶତକୀୟ ଓଡ଼ିଶାରେ ଭକ୍ତିଧର୍ମ ଏବଂ ତାର ବହୁ ପରବର୍ତ୍ତୀ ଅଧ୍ୟାୟ କାଂତାଭାବର ସମ୍ୟକ ବିକାଶର କଳ୍ପନା କରିବା ସୁଦୂରପରାହତ ହେବ । ଦ୍ୱିତୀୟରେ ଜୟଦେବ ନିଜେ ତାଂକ ଗୀତଗୋବିଂଦ କାବ୍ୟରେ ସେ ଲକ୍ଷ୍ମଣସେନଂକ ସଭାକବିମାନଂକର ଅନ୍ୟତମ ଥିଲେ ବୋଲି ସ୍ପଷ୍ଟ ବ୍ୟକ୍ତ କରି ଯାଇଛଂତି । ତା'ଛଡ଼ା ସେନ୍‌ପର୍ବର ଶେଷ କାବ୍ୟସଂକଳନ 'ସଦୁକ୍ତି କର୍ଣ୍ଣାମୃତ'ରୁ ତାଂକର ଦୁଇ ଦୁଇଟା ସେନ୍ ବଂଦନା ମିଳୁଛି । ଏହାଛଡ଼ା ଓଡ଼ିଆ ସାହିତ୍ୟରେ ଜୟଦେବଂକର କୌଣସି ପ୍ରଭାବ ନାଇ କି ତାଂକ ନାମୋଲ୍ଲେଖ ବି ଦେଖାଯାଏ ନାଇ । ଓଡ଼ିଶାର ଧ୍ୟାନ-ଧାରଣା, ମନନ-କଳ୍ପନା କିଂବା ଧର୍ମୀୟ ଜଗତରେ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀ ପର୍ଯଂତ ଗୀତଗୋବିଂଦ କିଂବା ରାଧାକୃଷ୍ଣ ପ୍ରଣୟ-ମୈଥୁନ ଭିତ୍ତିକ ଧର୍ମମତ ଆଦୌ ପ୍ରସାର ଲାଭ କରି ପାରି ନାଇ । କୃଷ୍ଣ ବାସୁଦେବ ଏବଂ ଦେବକୀନଂଦନ କୃଷ୍ଣହିଁ ସେତେବେଳ ପର୍ଯଂତ ଥିଲେ ପରିଚିତ ଦେବତା, ରାଧାକୃଷ୍ଣ ନୁହଂତି । ତା' ଛଡ଼ା ଓଡ଼ିଶାରେ ଜୟଦେବଂକର କୌଣସି ଚିହ୍ନବର୍ଣ୍ଣ ନାଇ—ଯେପରି ମେଘେଶ୍ୱର ମଂଦିର ପ୍ରଶସ୍ତି ରଚୟିତା ଜୟଦେବଂକ ସମକାଳୀନ କବି (ଯଦିଚ କନିଷ୍ଠ) ସେନ୍‌ସଭା ସଂଗେ ସଂପୃକ୍ତ ଉଦୟନାଚାର୍ଯ ପ୍ରଭୃତିଂକର

ଅଛି । ଭାରତର ଏବଂ ପୃଥିବୀର ତଥା ଓଡ଼ିଶାର ସମସ୍ତ ପୁରାତତ୍ତ୍ୱବିତ୍ ଯଥା ମ୍ୟାକଡୋନାଲ୍ଡ, ବ୍ୟୁହ୍‌ଲର ପ୍ରମୁଖ ସବୁ ବିଶେଷଜ୍ଞ ଏବଂ ପଂଡିତ ନୀଳକଂଠ ଦାସ, ଶ୍ରୀ ହରେକୃଷ୍ଣ ମହତାବ୍, ମୃତ୍ୟୁଂଜୟ ରଥ ଏବଂ ଡ: ସୁନୀତି ଚ୍ୟାଟାର୍ଜି, ଡ: ସୁକୁମାର ସେନ୍, ଡ: ନୀହାର ରଂଜନ ରାଏ ପ୍ରମୁଖ ସମସ୍ତେ ଏକବାକ୍ୟରେ ଜୟଦେବଂକୁ ଲକ୍ଷ୍ମଣସେନ୍‌ଙ୍କ ଅନ୍ୟତମ ସଭାକବି ରୂପେ ଚିହ୍ନୋଟ ଧରି ଯାଇଛଂତି । ତଥାପି, ମାତ୍ର ୩୦-୪୦ ବର୍ଷ ପୂର୍ବେ ଜଣେ ଦି'ଜଣ ଲେଖକ କଟକରେ ବସି ହଠାତ୍ ପ୍ରାଚୀନଦୀ କୂଳରେ କେଂଦୁବିଲ୍ୱ ଗ୍ରାମ ଆବିଷ୍କାର କରଂତି । ସେତିକି ନୁହେ, ଜୟଦେବଂକୁ ଇତିହାସର ସ୍ୱରିଶହ ବର୍ଷ ତିଆଁଇ ସୂର୍ଯ୍ୟବଂଶୀ, 'ଅଭିନବ-ଗୀତଗୋବିଂଦ' ପ୍ରଣେତା ପୁରୁଷୋତ୍ତମ ଦେବଂକ ସମସାମୟିକ କରି କାବ୍ୟ, ନାଟକ, ସିନେମା ପ୍ରଭୃତି ମଧ୍ୟ ବାହାରେ । ଇତିହାସ ଉପରେ ଏତେ ବଡ଼ ବ୍ୟଭିଚାର ଆଉ କେବେ ହେଇଚି କି ନାଇ ସଂଦେହ । ଏ ଭ୍ରାଂତ-ପ୍ରଚାର ଏତିକିରେ ଶେଷ ହେବା ନାହିଁ । ଜୟଦେବଂକୁ ଓଡ଼ିଆ କରି ଓଡ଼ିଶାର ଗୌରବ ବୃଦ୍ଧି ପରିବର୍ତ୍ତେ ବରଂ ଏହାର ମହାନ ଐତିହ୍ୟର ଘୋର ଅବମାନନା କରା ଯାଉଚି । ଯେଉପରି ଅଷ୍ଟମ-ନବମ ଶତକ ବେଳକୁ ଓଡ଼ିଆ ଭାଷା କି ଓଡ଼ିଆ ଲିପିର ଚିହ୍ନବର୍ଣ୍ଣ ନଥିଲେ ମଧ୍ୟ ମାଦଳାପାଂଜି ଭଳି ଅର୍ବାଚୀନ ଗଦ୍ୟ ଏବଂ ଶିଶୁବେଦ ଭଳି ପଦ୍ୟରଚନା ସେଇ ସମୟରୁ ହୋଇଚି ବୋଲି କହିବା ସଂପୂର୍ଣ୍ଣ ବାତୁଳତା ମାତ୍ର । ସାରଳା ଦାସଂକୁ ଏକାଦଶ ଶତାବ୍ଦୀର ଲୋକ ବୋଲି କହିବା ମଧ୍ୟ ଠିକ୍ ସେଇପରି ଏକ ଉଦ୍‌ଭଟ କଳ୍ପନା, କାରଣ ସେତେବେଳେକୁ ଓଡ଼ିଆ ଭାଷା କି ଲିପି କୌଣସିଟି ହେଲେ ଜନ୍ମ ହୋଇ ନାଇ । ପଟବିସ୍ତାରକୁ ଛାଡ଼ି ସାହିତ୍ୟ-ବିଚାର ନିର୍ଭୁଲ ହୁଏ ନାଇ କି ସଂପୂର୍ଣ୍ଣ ହୁଏ ନାଇ । ପ୍ରତ୍ୟେକ ଧ୍ୟାନ-ଧାରଣା, ଦାର୍ଶନିକ ମତବାଦ ଏବଂ ଭାଷା ଓ ଶୈଳୀକୁ ଐତିହାସିକ ବିକାଶ-ସୂତ୍ରର ପଟଭୂମିରେହିଁ ବିଚାର କରିବାକୁ ହୁଏ । କାରଣ ସେ ସବୁ ହଠାତ୍ ଆକାଶରୁ ପଡ଼େ ନାଇ କି କାହାର ଖିଆଲରୁ ଜନ୍ମ ହୁଏ ନାଇ । ସେଇ ଦୃଷ୍ଟିରୁ ଦ୍ୱାଦଶ ଶତକୀୟ ଓଡ଼ିଶାରେ ଗୀତଗୋବିଂଦ ରଚିତ ହୋଇଚି ବୋଲି କହିଲେ ସମଗ୍ର ଜାତିର ମାନସିକତା ଏବଂ ତାର ଧ୍ୟାନ-ଧାରଣା ଓ ମନନ-ଚିଂତନର କ୍ରମବିକାଶର ଧାରା ସଂପୂର୍ଣ୍ଣ ଓଲଟ ପାଲଟ ହୋଇଯିବ—ଯେପରି ସାରଳା ଦାସଂକୁ ଏକାଦଶ ଶତକର କବି ବୋଲି କଲିଲେ ଓଡ଼ିଆ ଭାଷା-ସାହିତ୍ୟର କ୍ରମବିକାଶର ସ୍ତର (ଖାଲି ଓଡ଼ିଆ ଭାଷା ନୁହେ, ସମଗ୍ର ପୂର୍ବଭାରତୀୟ ଭାଷା-ସାହିତ୍ୟର ସ୍ତର) ଓଲଟ ପାଲଟ ହୋଇଯିବ । ତେଣୁ ଏଭଳି ଅନୈତିହାସିକ ଓ ସଂପୂର୍ଣ୍ଣ ଅବୈଜ୍ଞାନିକ ସାହିତ୍ୟ-ଜିଜ୍ଞାସା ମୋ' ଦ୍ୱାରା ଅଗ୍ରାହ୍ୟ ନ ହୋଇ ଆଉ କଣ ହୋଇଥାଂତା ? ଏଭଳି ଭ୍ରାଂତ ମତର ପୋଷକତା କରିବା କେବଳ ତାଂକରି

ପକ୍ଷରେ ସଂଭବ ଯାହାଂକର ଇତିହାସବୋଧ ନାଇ, ଐତିହାସିକ ଦୃଷ୍ଟିକୋଣ ନାଇ; ନିଜର ଭାବପ୍ରବଣତା ଏବଂ ବ୍ୟକ୍ତିଗତ ଅଭିରୁଚି ସଂଗେ ଯେଉଁମାନେ ପଦେ ପଦେ ଇତିହାସ ଓ ବୈଜ୍ଞାନିକ ସତ୍ୟକୁ ଖାପ ଖୁଆଇବାକୁ ଯାଇ ସେ ସବୁକୁ ବିକୃତ ଓ ବିପର୍ଯ୍ୟସ୍ତ କରିଥାଂତି । ପଂଚସଖା ବୋଲି କୁହାଯାଉଥିବା କବିପଂଚକ ମଧ୍ୟରୁ ଶେଷ ତିନିଜଣ, ଅର୍ଥାତ୍ ତିଳକଣା ଗ୍ରାମର 'ଶୂନ୍ୟ ସଂହିତା' ଲେଖକ ଅଚ୍ୟୁତାନଂଦ ଓ ତାଂକ ମଉଳାଶ୍ରୁର ଯଶୋବଂତ ଏବଂ ଶିଶୁ ଅନଂତ ଯେ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗର ଲୋକ ଏକଥା ଅଚ୍ୟୁତାନଂଦଂକ ଗୁରୁ ପରଂପରା ଏବଂ ତାଂକ ଲେଖାରେ ଅରୁଣ ସ୍ତଂଭ ଓ ବର୍ତ୍ତମାନର ସତ୍ୟବାଦୀ ମଂଦିର ଆଦିର ଉଲ୍ଲେଖ ଏବଂ ବହୁ ଯାବନିକ ଶବ୍ଦର ଅବସ୍ଥିତିରୁ ଧରାପଡ଼େ । ତେଣୁ ଅଚ୍ୟୁତାନଂଦଂକ ବହୁଳପ୍ରଚାରିତ ପଂଚସଖା ତତ୍ତ୍ୱକୁ ଏକପ୍ରକାର ଅସ୍ୱୀକାର କରିବା ମୋ' ବିରୋଧରେ ପ୍ରସ୍ତୁତ ଅଭିଯୋଗ-ତାଲିକାରେ ଆଉ ଏକ ମସ୍ତ ଅପରାଧ । ରାଜଧାନୀରେ ସରକାରୀ ଛତ୍ରଛାୟା ତଳେ ରହି ଯେଉଁମାନେ ଇତିହାସ ସଂଗେ ହୋଲି ଖେଳଂତି ସେମାନଂକର କ୍ରୋଧଭାଜନ ହେବା ଛଡ଼ା ମୋ ପକ୍ଷରେ ଅନ୍ୟ ପଂଥା ନ ଥିଲା । ବହୁ ବର୍ଷ ଧରି ଚାଲିଆସୁଥିବା ଏଇ ସବୁ ଭ୍ରମ ପ୍ରମାଦରୁ ଓଡ଼ିଆ ସାହିତ୍ୟ ମୁକ୍ତ ନ ହେବା ଯାଏଁ ଯେ ଏ ସାହିତ୍ୟର ଭବିଷ୍ୟତ ଅଭିବୃଦ୍ଧି ସୁଦୂର-ପରାହତ ଏଥିରେ ସଂଦେହ ନାଇ । ଭୁଲ ଉପରେ ଛିଡ଼ା ହୋଇ କୌଣସି ଜାତିର ସାହିତ୍ୟ ବା ଇତିହାସ କେବେ ତାକୁ ପ୍ରକୃତ ଦିଗ୍‌ଦର୍ଶନ ଦେଇ ନ ପାରେ । ଗୋଟିଏ ମିଥ୍ୟାର ପ୍ରତିଷ୍ଠା କରିବାକୁ ଯାଇ ହଜାରଟା ମିଥ୍ୟାର ଆଶ୍ରୟ ନିଆ ଯାଉଚି ଏବଂ ଗବେଷଣା ନାମରେ ଭାବପ୍ରବଣତା ଏବଂ ଶସ୍ତା ପ୍ରାଦେଶିକ ମନୋବୃତ୍ତି ନିୟୋଗ କରାଯାଇଚି । ଏଇ ସବୁ ଭୁଲ ତଥ୍ୟର ଖଂଡନ କରିବାକୁ ଯାଇ ମୋତେ ବହୁ ଆଂଚଳିକ ଅଭିଶାପରେ ଭାଗୀ ହେବାକୁ ପଡ଼ିଚି । ତେଣୁ ଏ ଦିଗରେ ପଦକ୍ଷେପ ନେଇ ମୁଁ କେତେକ ସଂପୃକ୍ତ ବ୍ୟକ୍ତିଂକ ସଂଗଠିତ ଆକ୍ରମଣର ଶରବ୍ୟ ହେବା କିଛି ବିଚିତ୍ର ବା ଅବାଂଛନୀୟ ନୁହେ । ନିଜ ଦେଶର ମହାନ୍ ପରଂପରା ତଥା ବିରାଟ ପତିଆରାକୁ ଭୁଲ ଓ ବିକୃତ ଭାବରେ ପ୍ରତିପାଦନ କରିବା ଦ୍ୱାରା କ୍ଷୁଣ୍ଣ ଓ ବିକଳ କରାଯାଏ ବୋଲି ମୋର ବିଶ୍ୱାସ । ଆମର କାଳଜୟୀ କଳା ସାହିତ୍ୟ ଓ ଶିଳ୍ପକୁ ବିଶ୍ୱର ଶ୍ରଦ୍ଧାଭାଜନ କରିବାକୁ ହେଲେ ତହିଁର ପ୍ରକୃତ ଐତିହାସିକ ତାତ୍ପର୍ଯ୍ୟ ଖୋଜି ବାହାର କରିବାକୁ ହେବ ଏବଂ ତହିଁର ମୂଳ ଉତ୍ସ ଓ ବିକାଶର ସୂତ୍ର ଓ ଚରିତ୍ର ସଂବଂଧରେ ଏକ ବୈଜ୍ଞାନିକ ଧାରଣା ଦେବାକୁ ହେବ । ତେବେ ଯାଇ ତାହା ମର୍ଯ୍ୟାଦା ଆସନରେ ପ୍ରତିଷ୍ଠିତ ହୋଇ ପାରିବ । ବିକଳ୍ପରେ ଅଳୀକ ଭ୍ରାଂତ, ଓ ଭାବପ୍ରବଣ ବିତର୍କ ଦ୍ୱାରା ସେ ସବୁକୁ ବରଂ ଉପହାସର ବସ୍ତୁରେ ପରିଣତ କରାଯିବ ।

# ସାଂପ୍ରତିକ ସାହିତ୍ୟର ପୃଷ୍ଠଭୂମି

କେତେକ ନବ୍ୟ ସାହିତ୍ୟିକ (ଯେଉଁମାନଙ୍କୁ ଆଧୁନିକ କୁହାଯିବ କି ନାହିଁ ମୋର ସଂଦେହ) ମୋ ବିରୁଦ୍ଧରେ ଖଡ୍‌ଗହସ୍ତ ଯେ ମୁଁ କାହିଁକି ଏତେ ଲୋକ ଥାଉଁ ଥାଉଁ ସେମାନେ ଗତ କୋଡ଼ିଏ ବର୍ଷ ହେଲା ଚଳାଇ ଆସୁଥିବା ଗୋଷ୍ଠୀ-ଚକ୍ରାନ୍ତଙ୍କୁ ପଦାରେ ପକାଇଦେଲି । କ୍ରମାଗତ ଭ୍ରାଂତ ମୂଲ୍ୟାୟନ କରି, ସଂଗଠିତ ପରିପ୍ରଚାରର ବଳରେ କେତେକ ଉଚ୍ଚାକାଙ୍‌କ୍ଷୀ 'ମଂଦକବିଯଶଃପ୍ରାର୍ଥୀଂ'ଙ୍କୁ ରାତାରାତି ମହାକବି ବନାଇବା ଏବଂ କେତେକ ମଧ୍ୟମ କାଟର ଲେଖକଙ୍କୁ ପୃଥିବୀର ଶ୍ରେଷ୍ଠ ଔପନ୍ୟାସିକଙ୍କ ଅନ୍ୟତମ ରୂପେ ଛିଡ଼ା କରାଇବା ଏମାନଙ୍କର ଏକମାତ୍ର ଫଂଦି ହୋଇ ଆସିଚି । ଏଇ ଗୋଷ୍ଠୀର କେତେକ କବିଙ୍କର କାବ୍ୟକୃତିରେ ଥିବା ବହୁ ପ୍ରୟୋଗ, ଚିତ୍ରକଳ୍ପ ଏବଂ ଭାଷା ଓ ଭାବ ମଧ୍ୟ 'ପାଂଡୁଲିପି' ଓ 'କବିତା—୧୯୬୨' ପ୍ରଭୃତିରୁ ଅବିକଳ ଉତୁରି ଯାଇଚି ବୋଲି ବହୁ ପ୍ରମାଣ ଓ ନଜିର ସହ କେତେକ କଲେଜଛାତ୍ର ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ ଏକାଧିକ ପ୍ରବଂଧ ପ୍ରକାଶ କରିଥିଲେ । ତଥାପି ଅଜସ୍ର ଅର୍ଥ ବ୍ୟୟ କରି କେତେକ ପେଶାଦାର ମଲ୍ଲିନାଥଙ୍କୁ ମୁତୟନ କରି ସେମାନଙ୍କ ଜରିଆରେ ଏମାନେ ନିଜର ବିଫଳ ଅସ୍ତିତ୍ୱକୁ ବଜାୟ ରଖିବାକୁ ଚେଷ୍ଟା ଚଳାଇଛଂତି । କେତେକ ଇଂରାଜୀ ଓ ଓଡ଼ିଆ ଅଧ୍ୟାପକଙ୍କୁ ହାତ କରି ଏମାନେ କ୍ରମାଗତ ଭ୍ରାଂତ ମୂଲ୍ୟାୟନ ମାଧ୍ୟମରେ ଏବେଂତକୁ ବନସ୍ପତିରେ ପରିଣତ କରିବାକୁ ଚେଷ୍ଟା କରି ଆସୁଛଂତି । ଗତ କୋଡ଼ିଏ ବର୍ଷ ତଳେ ଜଣେ ଇଂରାଜୀ ଅଧ୍ୟାପକ ପ୍ରଥମେ ଏଇ ବନସ୍ପତି ଫ୍ୟାକ୍‌ଟରୀଟି ଖୋଲଂତି । ଏଂପିତ କବିମାନଂକ କବିତାରେ ନା ଅଛି ପ୍ରାଣ, ନା ଅଛି କୌଣସି ପାରିପାଟ୍ୟ । ଏମାନଂକର ବ୍ୟକ୍ତିଗତ ଆବେଗ କାବ୍ୟିକ୍ ଆବେଗରେ ପରିଣତ ହେବା ପାଇଁ ଆହୁରି ଅନେକ ବାକୀ ଅଛି । କେବଳ ବର୍ଣ୍ଣନାସର୍ବସ୍ୱ ଗଡ୍‌ଡାଳିକା ପ୍ରବାହ ସୃଷ୍ଟି କରି ଏବଂ ଝାଳନାଳ ପଦ୍ୟ ଲେଖି କେହି କେବେ ନଗଦ ଗୁଣଗ୍ରାହୀତା ଓ ପ୍ରଚାରକଂକ ଜରିଆରେ କବି ହୋଇଯାଏ ନାଇ । ସମୟ ସେମାନଂକୁ ଛିଂଡା କାଗଜ ପରି ଦୂରକୁ ଫିଂଗିଦିଏ, ନିଶ୍ଚିହ୍ନ କରିଦିଏ । ସଂପ୍ରତି ଏଇ ଗୋଷ୍ଠୀ-ଚକ୍ରଟି ପଦୋନ୍ନତି କରି ଏକ ପାରିବାରିକ-ଚକ୍ରରେ ପରିଣତ ହେଲାଣି । ସେଥିପାଇଁ ଓଡ଼ିଶାରେ କେହି କେହି ଏମାନଂକୁ ପଂଚ-ମକାର ଗୋଷ୍ଠୀ ରୂପେ ବର୍ଗୀକରଣ କରିବାର ପକ୍ଷପାତୀ । ଓଡ଼ିଶାର ସଚେତନ ପାଠକ ମଂଡଳୀ ଯେ ଏ ସବୁ ବିଷୟରେ ଅବହିତ ନୁହଂତି ତା ନୁହେଁ । ବେଳେ ବେଳେ ଏଇ ଗୋଷ୍ଠୀ-ପ୍ରଚାର ଏଭଳି ନଗ୍ନ ଓ କୁତ୍ସିତ ରୂପରେ ପ୍ରକାଶ ପାଉଚି ଯେ ତାହା ଦେଖିଲେ ଯେ କୌଣସି ଲୋକର ମୁଂଡ ଲଜ୍ଜାରେ ତଳକୁ ନଇଁଯିବ । ଏମାନଂକ ଭିତରୁ କିଏ ଯଦି ଜଣଂକ ବହିକୁ ଏକ ନିର୍ଦ୍ଦିଷ୍ଟ ପ୍ରାଇଜ୍

ପାଇଁ ସାତ ଆଠ ବର୍ଷ ସୁପାରିସ୍ କରାଇଲାଣି ଓ ସେ-ଜଣକ ପ୍ରାଇଜ୍, ପାଇବା ବାସୀ ଦିନ ଋଣ ପରିଶୋଧ କରିବା ଉଦ୍ଦେଶ୍ୟରେ ତାକୁ ଆଗାମୀ 'ଦୁଇଶ ବର୍ଷର ମହାକବି' ବୋଲି ସାର୍ଟିଫିକେଟ ଦେଲାଣି । ଖାଲି ସେତିକି ନୁହେ, ନିଜ ପୁତୁରାକୁ 'ଆଧୁନିକ ଓଡ଼ିଆ କବିତାର ବୋପା' ବୋଲି ଘୋଷଣା କରି ନିଜେ Ex-officio କକାର ସ୍ଥାନ ଦଖଲ କରି ବସିଲାଣି । ଏଭଳି ଉତ୍କଟ ଗୋଷ୍ଠୀ-ମନୋଭାବ ଏଥିପୂର୍ବରୁ କେବେ ଓଡ଼ିଆ ସାହିତ୍ୟରେ ଦେଖା ଦେଇ ନ ଥିଲା । ଏ ଗୋଷ୍ଠୀର ପ୍ରଧାନ କାରପଟଦାର ହେଉଛନ୍ତି ଜଣେ ଇଂରାଜୀ ଅଧ୍ୟାପକ ଯାହାଂକର ଓଡ଼ିଆ ସାହିତ୍ୟକୁ ଏକମାତ୍ର ଅବଦାନ କହିଲେ ବୁଝାଏ କେତେ ଖଂଡି ସ୍ୱହସ୍ତ ବିତରିତ ସାର୍ଟିଫିକେଟ ମାତ୍ର—ଯାହାର ଦାମ ସେ ସବୁ ଲେଖାଯାଇଥିବା କାଗଜଠାରୁ ମଧ୍ୟ ଅଧିକ ନୁହେଁ । ଏ କୁଚକ୍ରୀମାନେ କାହାକୁ କେଉଁ ପ୍ରାଇଜ୍ ଦିଆଯିବ ସେ ବିଷୟରେ ଦଶ-ବର୍ଷିଆ ଯୋଜନାମାନ ପ୍ରସ୍ତୁତ କରି ପ୍ରଚାରରେ ଲାଗିଯାଂତି ଏବଂ ପେଶାଦାର ପ୍ରଚାରକମାନଂକ ଦ୍ୱାରା ପ୍ରବଂଧମାନ ଲେଖାଇ କଳାକୁ ଧଳା କରିବାର ଚେଷ୍ଟା କରଂତି । ସଂପ୍ରତି ସେମାନେ ସେମାନଂକର ପତ୍ରିକାର ଚତୁର୍ଥ ଜନ୍ମରେ ଭବିଷ୍ୟତରେ ଓଡ଼ିଶାର ଯେଉଁ ଗ୍ରାରିଜଣ ଲେଖକ 'ଜ୍ଞାନପୀଠ' ପୁରସ୍କାର ପାଇବେ ସେମାନଂକର ତାଲିକା ପ୍ରକାଶ କରି ଯୋଜନାବଦ୍ଧ ପ୍ରଚାରରେ ଲାଗିଗଲେଣି । ଏଇ ପତ୍ରିକାର ସଂପାଦକୀୟ ସ୍ତଂଭରେ ଜଣେ ନିର୍ଦ୍ଦିଷ୍ଟ ଗୋଷ୍ଠୀବାଲଂକ ବହିକୁ ଏଇ ପୁରସ୍କାର ପାଇଁ ସାତବର୍ଷ କାଳ ସେମାନେ ସୁପାରିସ କରାଇଥିବା କଥା ନିଜ ମୁହଁରେ ସ୍ୱୀକାର କରି (ଯେପରିକି ଏ ସାତବର୍ଷରେ ଓଡ଼ିଶାରେ ଆଉ କେହି ଲେଖକ ନ ଥିଲେ ।) ସେଥିପାଇଁ ବାହ୍ୱାସ୍ଫୋଟ ମାରିବାର ଦେଖାଯାଉଚି । କୌଣସି ଏକ ନିର୍ଦ୍ଦିଷ୍ଟ ପୁରସ୍କାରକୁ ଆଖି ଆଗରେ ରଖି ଏବଂ ତହିଁର ପ୍ରକାଶ୍ୟ ଠିକାଦାରି ନେଇ ଯଦି ସାହିତ୍ୟ ସାଧନା କିଂବା ସାହିତ୍ୟ-ମୂଲ୍ୟାୟନ କରାଯାଏ ତେବେ ତାହା କିଭଳି ସାହିତ୍ୟ ସମାଲୋଚନା ହେବ ତାହା ସମସ୍ତେ ବୁଝି ପାରୁଥିବେ । ଯେଉଁମାନଂକ ଜୀବନରେ କୌଣସି ତ୍ୟାଗ ବା ସଂଘର୍ଷ ନାଇ—ଯେଉଁମାନେ ସିଧା ୟୁନିଭରସିଟି କିଂବା ସରକାରୀ ଦପ୍ତରରୁ ବାହାରି ଆସି କିଛି ସମୟ ପାଇଁ ସୌଖୀନ ସାହିତ୍ୟ-ନିଶା କରଂତି ସେମାନେ ଯେ ସାହିତ୍ୟକୁ ଏକ ତହବିଲ ଛଡ଼ା ଅନ୍ୟ କିଛି ଭାବି ପାରିବେ ନାଇ ସେଥିରେ ସଂଦେହର କାରଣ କଣ ଅଛି ? ଯିଏ ଏମାନଂକର ବିରୋଧ କଲା ତା' ବିରୁଦ୍ଧରେ ସେମାନେ ସେମାନଂକର ପୋଷା ଗୁଂଡା ଓ ଭଡ଼ାଟିଆ ଅଧ୍ୟାପକମାନଂକୁ ଲଗାଇ ଦେବେ, —ସଭା ସମିତିରେ ଆକ୍ରମଣ କରିବାଠାରୁ ପତ୍ର-ପତ୍ରିକାରେ ଧାରାବାହିକ କୁତ୍ସା-ପ୍ରଚାର ଚଳାଇବା ପର୍ଯ୍ୟଂତ ସମସ୍ତ ପ୍ରକାର ଜଣାଶୁଣା ଅପକୌଶଳ ପ୍ରୟୋଗ କରିବା ନିମଂତେ । ଏଭଳି ପରିସ୍ଥିତିରେ ଜଣେ ସାଧାରଣ ସଚ୍ଚୋଟ ସମାଲୋଚକ

ଏମାନଂକଠ ମୁକାବିଲା କରିବାକୁ ସାହସ କରିବ କିପରି ? ଏମାନେ ଯେ ସର୍ବତ୍ର ଭୟ ଓ ଆତଂକର ରାଜ୍ ସୃଷ୍ଟି କରି ରଖିଛଂତି । ଏମାନଂକର ଅଦୃଶ୍ୟ ଗୁପ୍ତଚର-ମାନେ ଏବଂ ଦଲାଲମାନେ ସବୁ ବିଶ୍ୱବିଦ୍ୟାଳୟ କଲେଜ, ସାହିତ୍ୟ-ସଂସ୍ଥା, ପତ୍ରିକା ଅଫିସ ପ୍ରଭୃତି କେଂଦ୍ର ଜାଗାମାନଂକରେ ପଇଂଚ ମାରୁଛଂତି । କୌଣସି ପ୍ରତିଷ୍ଠ-ବଂତ ଲେଖକ ଲେଖିକା ଦେଖିଲେ ତାଂକୁ ଦଳକୁ ଭିଡ଼ି ନେବା ଦେଖା ଯାଉଛି ।

ଏଠାରେ ବକ୍ତବ୍ୟ ଯେ ଜଣେ ନିଷ୍ଠାପର, ସୃଜନଧର୍ମୀ, ବୟୋଜ୍ୟେଷ୍ଠ ସାହିତ୍ୟିକ ଭାବେ କୌଣସି ନିର୍ଦ୍ଦିଷ୍ଟ ପୁରସ୍କାର ପାଇଁ ଆଂଚଳିକ କମିଟି ପ୍ରୋକ୍ତ ଲେଖକଂକର ଖଂଡିଏ ପୁସ୍ତକକୁ ବର୍ଷେ ସୁପାରିସ୍ କରିଥିଲେ କାହାର କିଛି କହିବାର ନଥିଲା । ବରଂ ସମସ୍ତେ ସେଥିରେ ଆନଂଦିତ ହୋଇଥାଂତେ ଏବଂ ସେ ପୁରସ୍କୃତ ହୋଇଥିଲେ ଗର୍ବ ଅନୁଭବ କରିଥାଂତେ । କାରଣ ସେ ସେଥି-ପାଇଁ ସଂପୂର୍ଣ୍ଣ ହକ୍‌ଦାର । କିଂତୁ ସାତ ବର୍ଷ କାଳ କେବଳ ତାଂକରି ଭିନ୍ନ ଭିନ୍ନ ପୁସ୍ତକକୁ ସୁପାରିସ କରି ପଠାଇବା ମୂଳରେ ପ୍ରକୃତ ସାହିତ୍ୟିକ ମୂଲ୍ୟାୟନ ନା ଗୋଷ୍ଠୀ-ବିଚାର କଣ କାର୍ଯ୍ୟ କରୁଛି ତାହା ସମସ୍ତେ ବୁଝି ପାରୁଥିବେ । ଏ ସାତ ବର୍ଷ ଭିତରେ କଣ ଓଡ଼ିଶାର ଆଉ କେହି ଲେଖକ କୌଣସି ଉଲ୍ଲେଖଯୋଗ୍ୟ ଲେଖା ପ୍ରକାଶ କରିନଥିଲେ ? ସାହିତ୍ୟ କିପରି ଏକ ଏକଚାଟିଆ କାରବାରରେ ପରିଣତ ହେଲାଣି ଏହାର ଦୃଷ୍ଟାଂତ ଓଡ଼ିଶା ଛଡ଼ା ଅନ୍ୟତ୍ର ବିରଳ ।

## ସାହିତ୍ୟ ଓ ଶାଗୁଣା

ସଂପ୍ରତି ଏକ ଭୁଷଂଡିକାକକୁ ଆଧୁନିକ ଓଡ଼ିଆ ସାହିତ୍ୟର ମାରଫତଦାର ସାଜିଥିବା ଶୁଷ୍କ ତଡ଼ାଗ ବାସୀ ବୃଦ୍ଧ ଶାଗୁଣା ସହ ଭେଟାଇ ଏମାନେ ମୋ' ବିରୁଦ୍ଧରେ ଏକ ନିୟମିତ କୁତ୍ସା-ଅଭିଯାନ ଆରଂଭ କରିଛଂତି । ଜଣେ ଦି'ଜଣ ଅଧ୍ୟାପକଂକୁ ମଧ୍ୟ ଏମାନଂକ ସଂଗେ ଯୋଡ଼ିଦାର ହେବାକୁ ମୁତୟନ କରାଯାଇଛି । ଶୁଣାଯାଏ ଏଥିପାଇଁ ପ୍ରଚୁର ଅର୍ଥ ଖରଚ ଓ ବରଦ କରାଯାଇଛି । କେତେକ ପତ୍ରିକାର ପ୍ରତି ସଂଖ୍ୟାରେ କେବଳ ନିର୍ଲଜ୍ଜ କୁତ୍ସା-ପ୍ରଚାରହିଁ ଚାଲିଛି ମାସ ମାସ ଧରି—ଏଇ କାଗଜ ଦୁର୍ମୂଲ୍ୟ ଯୁଗରେ ବି । କେବେ ଯେ ଏହାର ଶେଷ ହେବ ତାହା କେବଳ ସେଇମାନେହିଁ ଜାଣଂତି । ଏଇ ସି-ଅକ୍ଷର-ବରୁଣୀ-ପାହାଡ଼ ଭୁଷଂଡିକାକହିଁ ବର୍ତ୍ତମାନ ଏଇ ପତ୍ରିକାର ପ୍ରଧାନ ତତ୍ତ୍ୱକାର ଏବଂ ଧୁରଂଧର ସମାଲୋଚକ—ଯାହାର ଏକମାତ୍ର ପେଶା ହେଲା ସାହିତ୍ୟର ଆବରଣ ତଳେ ବ୍ୟକ୍ତିଗତ ଏବଂ ପାରିବାରିକ କୁତ୍ସାରଚନା ଏବଂ ନର୍ଦ୍ଦମା-ସମୀକ୍ଷା । ଏହାର କାମଳ ଦୃଷ୍ଟିରେ ସଂସାରର ସବୁକିଛି ହିଁ ହଳଦିଆ, ମଳିନ ଓ ରୋଗଗ୍ରସ୍ତ ଦେଖାଯାଏ ।

ଏ ପତ୍ରିକାର କ୍ରମ-ଅଧୋଗତି ଦେଖିଲେ କିଏ ବିଶ୍ୱାସ କରିବ ଯେ ଏହା ଦିନେ ଆମ ସମସ୍ତଂକର ଆସ୍ଥାଭାଜନ ସାହିତ୍ୟ ପତ୍ରିକା ଥିଲା । ଏହା ବର୍ତ୍ତମାନ

ଦେଶର ସବୁଠାରୁ ଘୃଣିତ କୁତ୍ସାଧର୍ମୀ ପତ୍ରିକାକୁ ମଧ୍ୟ ବଳିଗଲାଣି । ଭୁଷଂଡି-କାକର ଦୁର୍ମିଳ ରକ୍ତରେ ସବୁବେଳେ ହିଂସା ଓ ଈର୍ଷାର ବାଡ଼ବାନଳ ଜଳୁଥିବା କଥା କିଏ ନ ଜାଣେ ? କଟକର ଘର ଘର ବୁଲି କୁତ୍ସାର ରସଦ ସଂଗ୍ରହ କରିବା ଏହାର ଦୈନଂଦିନ କାମ । କେଉଁଠାରୁ ଏକ ଛିଂଡା ଚିଠିର ଟୁକୁରା, କେଉଁଠୁ ଏକ ଛିନ୍ନ କବିତାର ଉଚ୍ଛିଷ୍ଟ ଗୋଟାଇ ନେଇ ତାକୁଇ ଜୀବିକା କରି ଚଳିବା ତାର ଏକମାତ୍ର ଧର୍ମ, ଅର୍ଥ, କାମ ମୋକ୍ଷ କହିଲେ ଚଳେ । ଏଭଳି ଲୋକର କବିତା ଓ ସମସ୍ତ ଲେଖାର ଅନ୍ୟ ନାମ ହେଉଛି ଛଂଦୋବଦ୍ଧ କୁତ୍ସା, ଏଥିରେ କାହରି ଦ୍ୱିମତ ଆଉ ନ ଥାରେ । ଏଇଭଳି ଏକ ସଦାବ୍ରତୀ ଫଟା କଳସ ବର୍ତ୍ତମାନ ଏଇ ପଂଚ-ମକାର ଗୋଷ୍ଠୀର ମୁଖପାତ୍ର ସାଜିଥିବା ବଡ଼ ହାସ୍ୟକର ମନେ ହୋଇ ପାରେ । ମାତ୍ର କଥା ହେଉଛି ଏ ବାଇଆ ହାତରେ ନିଆଁ ଖପରା ଦେଲା କିଏ ? କିଏ ସେ ଅଦୃଶ୍ୟ ହାତ ? କାହାର ଗୋପନ ପାଂଠି ଓ ଷଡ଼ଯଂତ୍ର ଏହା ପଛରେ କାମ କରୁଛି ? ସେହିମାନେହିଁ ହେଲେ କିଏ ଓଡ଼ିଶାର ଆଗାମୀ ଦୁଇଶ ବର୍ଷର ମହାକବି, କିଏ ଓଡ଼ିଆ କବିତାର ସଂରକ୍ଷିତ ଜଂଗଲର ଧୂର୍ତ୍ତ କୋକଶିଆଳୀ—ଧରାଧରି-ଧୁରଂଧର, ଗଳଦ୍‌ଘର୍ମ କବିପୁଂଗବ, କିଏ ପୁଣି ଜର୍ଜିଆନ କବିତାକୁଶଳ ପୂର୍ତ୍ତ ଅଧ୍ୟାପକ—ପାହାଂକୁ ଚିହ୍ନିବାରେ କାହାରି କିଛି ବାକୀ ନାଇ

ଆହୁରି ଟିକିଏ ମୂଳକୁ ଗଲେ ଦେଖାଯିବ ଯେ ଏଇ ଅସାଧୁ ମେଂଟଟିର ଅସଲ ସ୍ୱରୂପ ଯେତେ ଯେତେ ପଦାରେ ପଡୁଛି ସେତିକି ସେତିକି ସେମାନେ ଅଧିକ ସଂଗଠିତ, ସପ୍ରତିଭ ଓ ପ୍ରତିହିଂସାପରାୟଣ ହୋଇ ଉଠୁଛଂତି । ଏଥିପାଇଁ କୁତ୍ସାପ୍ରଚାରର ନୂଆ ନୂଆ ଉପାୟମାନ କଟକ ଓ ଭୁବନେଶ୍ୱରରେ ଉଦ୍‌ଭାବନ କରାଯାଉଛି ଏବଂ ନୂଆ ନୂଆ ପ୍ରଚାରକ ମୁତୟନ କରାଯାଉଛି । ଆଜିକି ପ୍ରାୟ ତିନି-ବର୍ଷ ତଳେ ଓଡ଼ିଶାର ମୁଖ୍ୟମଂତ୍ରୀଂକ ଦପ୍ତରରୁ ମୁଁ ତାଂକୁ ଏକ ପାର୍ଟି ସଂବାଦ-ପତ୍ର କାଢ଼ିବା ପାଇଁ ପରାମର୍ଶ ଦେଇ ଲେଖିଥିବା ଚିଠିକୁ ହରଣଚାଲ କରି ନେଇ କିଂବା ତହିଁର ବିଷୟବସ୍ତୁକୁ ବିକୃତ କଦର୍ଥ କରି ଲବୀମହଲରେ ପ୍ରଚାର କରି ଜଣେ ସୁଚତୁର ପ୍ରଶାସକ ଅଫିସର ଶଂସିତି ପତ୍ରିକାକୁ ମୋ' ବିରୁଦ୍ଧରେ ଉତ୍ତେଜିତ କରିଥିବା ଜଣାଯାଏ । କାରଣ ଧାରାବାହିକ କୁତ୍ସା-ଅଭିଯାନ ଚଳାଇବା ପୂର୍ବରୁ ଏ ପତ୍ରିକାର ସ୍ୱଳ୍ପମତି, ଓଳିଆରୁ ଗଢ଼ା, ଜଣେ ସହକାରୀ ଘୂରିଆଡ଼େ କହି ବୁଲିଲେ ଯେ ମୁଁ କୁଆଡ଼େ ମୁଖ୍ୟମଂତ୍ରୀଂକୁ ତାଂକ ପତ୍ରିକା ବଂଦ କରି ଦେବି ବୋଲି ଲେଖିଥିଲି ଏବଂ ସେ ଚିଠି ସେମାନଂକର ହସ୍ତଗତ ହୋଇଛି · ମାତ୍ର ଟିକିଏ ବୁଦ୍ଧି ଥିଲେ ସେମାନେ ଦେଖିଥାଂତେ ଏକ ସାହିତ୍ୟ-ପତ୍ରିକାକୁ କିଏ କିପରି ବଂଦ କରିଦେବାକୁ ଲେଖିବ ଏବଂ ବଂଦ କରିଦେଲେ ମଧ୍ୟ ସେଥିରେ କି ରାଜନୈତିକ ଉଦ୍ଦେଶ୍ୟ ସାଧିତ ହେବ ? ସେ ଯାହାହେଉ, ଏହା ଯଦି ସତ ହୋଇଥାଏ

ନୃତବେ ସରକାରୀ କାଗଜପତ୍ର ଏପଟ ସେପଟ କରିବା ଏବଂ ସେଥିରୁ ବ୍ୟକ୍ତିଗତ ଫାଇଦା ଉଠାଇବା ସରକାରୀ କର୍ମଚାରୀ ଆଚରଣବିଧିର ଖିଲାପ ଏକ ଗର୍ହିତ କାର୍ଯ୍ୟ ନୁହେଁ କି ?

ସେଇପରି କେତୋଟି ବେନାମୀ ଚିଠି ସଂଗେ ମୋ' ନାମକୁ ଜଡ଼ାଇବା ପାଇଁ ଜଣେ କୁଳି ଅଧ୍ୟାପକ ଏବଂ ପ୍ରୋକ୍ତ କୁହାଜୀବୀଂକ ଜରିଆରେ ଚେଷ୍ଟା କରଯାଉଚି । ୧୯୭୨ ମସିହା ଡିସେଂବର ମାସରେ ଲିଖିତ ବୋଲି ପ୍ରଥମେ କୁହାଯାଉଥିବା ଏ ଚିଠି ଯଦି ସତ ହୋଇଥାଏ ତେବେ ମୁଁ ସେତେବେଳକୁ ବାଂଲାଦେଶ ବିଶ୍ୱବିଦ୍ୟାଳୟଂକ ଆମଂତ୍ରଣକ୍ରମେ ଭାରତ ବାହାରେ ଥିଲି । ମୋ ବିଦେଶ ଅବସ୍ଥାନ ସମୟରେ ଏ ଚିଠି ସେ କିପରି ପାଇଲେ ତାହା ବୁଝିବା ମୋ' ପକ୍ଷରେ କଠିନ । ଯେପରି ଜଣାଯାଏ ଶ୍ରାଦ୍ଧକର୍ମାଣି, ସ୍ମୃତିତର୍ପଣି ଓ ପୂଜ୍ୟପୂଜାଦିରେ ଧୁରଂଧର ଏଇ ପ୍ରତିଭାଜୀବୀ କୁଳି ଅଧ୍ୟାପକ ଜଣକ କୌଣସି ଶ୍ରାଦ୍ଧବାସରେ ପିଂଡଗ୍ରହଣ ଢ଼ଂଗାରୁ ଏଇ ମୂଲ୍ୟବାନ ଦାଗଚ ଖଂଡିକ ସଂଗ୍ରହ କରିଥିବେ ଏବଂ ତାକୁ ଏବେ ବିକି ଭାଂଗି ବେଶ୍ ଗୁଜରାନ୍ ମେଂଟାଉଛଂତି । ତାଂକ ଘରକୁ ଏଥିପାଇଁ ସଂଧ୍ୟାବେଳେ ଭୁବନେଶ୍ୱରରୁ କେହି ଜଣେ ଆଇ. ଏ. ଏସ୍. ଅଫିସର କୁଆଡ଼େ ଦୌଡ଼ାଦଡ଼ି କରୁଛଂତି ବୋଲି ସେ କହି ବୁଲୁଛଂତି । ତାଂକୁ ବଂଚିବାର ଖୋରାକ ମିଳିଚି, ମୁଁ ଅନଂଦିତ । କୁହାଜୀବୀକୁ ମଧ୍ୟ ରସଦ ମିଳିଚି । ଠିକ୍ ସେଇପରି ଏ ଗୋଷ୍ଠୀର ଜଣେ ଦି ଜଣ କବି ମୋର 'ପାଂଡୁଲିପି', 'ସ୍ୱଗତ' ଓ 'କବିତା-୧୯୭୨'ରୁ ବହୁ ଧାଡ଼ି, ପ୍ରୟୋଗ, ଏବଂ ଚିତ୍ରକଳ୍ପ ଆଦି ନିଜ ନିଜ ଲେଖାରେ ଅବିକଳ ଗ୍ରହଣ କରିଥିବା ଦର୍ଶାଇ ଜଣେ କଲେଜଛାତ୍ର କେତେକ ପତ୍ରପତ୍ରିକାରେ ପ୍ରବଂଧ ଓ ସମୀକ୍ଷାମାନ ଲେଖିଥିଲେ ।, ଶଂସିତ କୁହାଜୀବୀ ମଧ୍ୟ ମୋର 'ଅଭିଯାନ' ଓ 'ପାଂଡୁଲିପି' ପୁସ୍ତକର ବହୁ ଅଂଶ, ଉପମା ଓ ଚିତ୍ରକଳ୍ପ, ଧାଡ଼ି, ପଂକ୍ତି ଅବିକଳ ନିଜ କବିତାରେ ଉତାରିଥିବା କଥା ଦର୍ଶାଇ ଏଇ ଛାତ୍ର କେତେକ ପ୍ରବଂଧ ଲେଖିଥିଲେ । ବର୍ତ୍ତମାନ ସେ ପ୍ରବଂଧଗୁଡ଼ିକ ସେ 'ଅର୍ବାଚୀନ ଯୁବକ' ଲେଖି ନାହାଂତି ବୋଲି କୁହାଯାଉଚି । ତାଂକଠାରୁ କୌଶଳକ୍ରମେ ଏକ ଚିଠି ମଧ୍ୟ ଯୋଗାଡ଼ କରଯାଇଚି ବୋଲି ଉକ୍ତ ପତ୍ରିକାରୁ ପ୍ରକାଶ । ଯେପରି ଦେଖାଯାଉଚି ସାହିତ୍ୟକୁ ମଧ୍ୟ 'ଘୋଡ଼ାବେପାର' ରାଜନୀତିରୁ ସଂକ୍ରମିତ ହେଲାଣି । ସେ ଯାହାହେଉ, ଶଂସିତ ପ୍ରବଂଧମାନଂକରେ ଥିବା ତଥ୍ୟ ଓ ଉଦାହରଣମାନ ଅଖଂଡନୀୟ ରହିଚି ଓ ରହିବ । ସେଥିରେ ଥିବା ବିଷୟବସ୍ତୁକୁ ଖଂଡନ କରିବା ପାଇଁ ସଂପୃକ୍ତ କୁହାକାରୀ ସାହସ କରି ନାହାଂତି । ସତ୍ୟକୁ ପକ୍ଷ ଢାଂକିବା ପାଇଁ ଭୁଷଂଡିକାକ ଏବଂ ତାର ଯୋଡ଼ିଦାର କୁଳି ଅଧ୍ୟାପକ ଯେତେ ଯେତେ ଚେଷ୍ଟା କଲେ ମଧ୍ୟ ତାହା ସ୍ୱୟଂପ୍ରକାଶଶୀଳ ।

ସେଇ କଲେଜ ଛାତ୍ର ଜଣକ ସଂପୃକ୍ତ ପତ୍ରିକା ସବୁର ସଂପାଦକମାନଂକୁ ଭେଟି ନିଜେ ଲେଖା ଦେଇ ଆସିଥିବା କଥା. ସେଇ ସଂପାଦକମାନେହିଁ କହିବେ ଏବଂ ସେ ଲେଖକ 'ଅର୍ବାଚୀନ' କି ନୁହେ ତାହା ତାଂକର ସଂଘିତ ପ୍ରବଂଧ ପ୍ରକାଶ ପାଇବାର ପ୍ରାୟ ତିନି ଚାରି ବର୍ଷ ପୂର୍ବରୁ ବିଭିନ୍ନ ପତ୍ରପତ୍ରିକାରେ (ଏପରିକି 'ଝଂକାର' ଓ 'ପ୍ରଜାତଂତ୍ର'ରେ ମଧ୍ୟ) ପ୍ରକାଶିତ ବହୁ ପ୍ରବଂଧ, ଗଳ୍ପ, କବିତା ଆଦିରୁ ବେଶ ପ୍ରମାଣିତ ହେବ । କାହିଁ, ସେତେବେଳେ ତ କେହି ସେ ଅର୍ବାଚୀନ ବୋଲି ପ୍ରଶ୍ନ ଉଠାଇ ନଥିଲେ । ତା'ଛଡ଼ା ଏଇ ଲେଖାମାନ ଯିଏ ପଢ଼ିଚି ସେ କହିବ ଯେ ଏହା ଏକ ଅପରିପକ୍ୱ ହାତର ଲେଖା । ଲେଖାଗୁଡ଼ିକର ଭାଷା, ପ୍ରକାଶ-ଭଂଗୀ ସବୁ କିଛି ଜଣେ ଅଳ୍ପବୟସ୍କ ଲେଖକର ଲେଖା ବୋଲି ପ୍ରଥମ ଦୃଷ୍ଟିରେହିଁ ଯେ କେହି କହି ଦେଇ ପାରିବ । ସେଥିପାଇଁ ତଥ୍ୟପ୍ରମାଣର ଆବଶ୍ୟକତା ନାଇ । ମାତ୍ର ଉକ୍ତ ଲେଖକ ସଂପୃକ୍ତ ଅଧମର୍ଣ୍ଣ କବିଂକ ବହୁ ଲେଖାରେ 'ଅଭିଯାନ', 'ପାଂଡୁଲିପି' ପ୍ରଭୃତିରୁ ବହୁ ପଂକ୍ତି, ଧାଡ଼ି, ଉପମା ଏବଂ ଆଂଗିକ ଓ ଆମୂଳ ପ୍ରଭୃତି ଅବିକଳ ଉତାରି ଯାଇଚି ବୋଲି ଯେଉଁ ନଜିରମାନ ଥୋଇଥିଲେ ତାକୁ ଖଂଡନ କରିବାର ସାହସ ଅଛି କି ? ସେଇପରି ସେ 'ଶବ୍ଦର ଆକାଶ'ରେ ବହୁ ବାକ୍ୟାଂଶ ଓ ଚିତ୍ରକଳ୍ପ ସିଧାସଳଖ 'କବିତା ୧୯୬୨' ଓ 'ସ୍ୱଗତ', 'ପାଂଡୁଲିପି' ପ୍ରଭୃତିରୁ ନିଆଯାଇଚି ବୋଲି ତାଂକ ରିଭ୍ୟୁରେ ଯାହା ଦର୍ଶାଇଥିଲେ ତାକୁ କିଏ ଅସ୍ୱୀକାର କରି ପାରିବ କି ? ତେଣୁ ଅସଲ ବିଷୟକୁ ଛାଡ଼ି ଏହା ତାଂକ ଲେଖା ନୁହେ ବୋଲି ଏକ ତାହା ମିଛ ପ୍ରଚାର ଚଳାଇଲେ ଏ ଲେଖକମାନେ ବର୍ତ୍ତିଯାଇ ପାରିବେ ନାଇ । ଏହା କେବଳ ମୂଳବସ୍ତୁକୁ ବାଆଁ-ରୁଳିଆ କରିବା ପାଇଁ ଏକ ଅପକୌଶଳ ମାତ୍ର । ଏହା ଦ୍ୱାରା ସେମାନେ ସେମାନଂକ ବିରୁଦ୍ଧରେ ଆନୀତ ଅଭିଯୋଗରୁ ମୁକ୍ତ ହୋଇ ପାରିବେ ନାଇ । ବରଂ ଅଧିକ ହାସ୍ୟାସ୍ପଦ ହେବେ ।

ଏଇ ପରିପ୍ରେକ୍ଷିତରେ ସ୍ମରଣୀୟ ଯେ ଉତ୍କଳ ବିଶ୍ୱବିଦ୍ୟାଳୟର ଛପା ଚିଠି କାଗଜରେ (ଇନ୍‌ଲ୍ୟାଂଡ୍ letter headରେ) ଜଣେ 'ହିତୈଷୀ ବଂଧୁ'ଂକଠାରୁ ମୋତେ ମଝିରେ ମଝିରେ ନାନା ହିତୋପଦେଶ ଓ ବିପଦ ସୂଚନା ଅଯାଚିତ ଭାବେ ମିଳିଥାଏ । ବଂଧୁବର ନିଶ୍ଚୟ ଜଣେ ଉତ୍କଳ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ହେବେ । ନୋହିଲେ ଏ ଚିଠି କାଗଜ ଅନ୍ୟ ଲୋକ ପାଆଂତା କିପରି ? ଗତ ଜାନୁଆରୀ ମାସ ପ୍ରଥମ ସପ୍ତାହରେ ରାଜଗଂଗପୁର ଲାୟନ୍‌ସ କ୍ଲବ୍ ଆନୁକୂଲ୍ୟରେ ଅନୁଷ୍ଠିତ ହେବାକୁ ଯାଉଥିବା ହିଂଦୀ-ଓଡ଼ିଆ କବିସମ୍ମେଳନରେ ସଭାପତିତ୍ୱ କରିବା ପାଇଁ ମୁଁ ଆମଂତ୍ରିତ ହେବା ଅବସରରେ ଏଭଳି ଖଂଡ଼ିଏ ଚିଠି ମିଳିଥିଲା —ଯାହାକୁ କି ମୁଁ ଉକ୍ତ ଲାୟନସ କ୍ଲବ୍‌ର କର୍ତ୍ତୃପକ୍ଷ ଶ୍ରୀ ଜାଲାନ୍ ଓ ଶ୍ରୀ ଏସ. କେ.

କେଉିଆଂକ (ଓଡ଼ିଶା ସିମେଂଟ୍ ଲି:ର ଜେନେରାଲ ମ୍ୟାନେଜର) ନିକଟକୁ ପଠାଇ-ଦେଇଥିଲି । ତାହା ଉତ୍କଳ ବିଶ୍ୱବିଦ୍ୟାଳୟର ଛପା ଚିଠି କାଗଜରେହିଁ ଲିଖିତ ହୋଇଥିଲା ଏବଂ ଠିକଣାରେ 'ଭୁବନେଶ୍ୱର-୪' କାଟି 'କଟକ-୩' କରାଯାଇଥିଲା । ସେଥିରେ ମୁଁ ରାଜଗାଂଗପୁର ଗଲେ ବାଟରେ ଏବଂ ସଭାସ୍ଥଳରେ ନାନା ବିପଦ ଆପଦର ସମ୍ମୁଖୀନ ହେବି ବୋଲି 'ହିତୈଷୀ ବନ୍ଧୁ' ସୂଚନା ଦେଇଥିଲେ ଏବଂ ସେଠାକୁ ନ ଯିବାହିଁ ମୋ ପକ୍ଷରେ ମଂଗଳଜନକ ଓ ନିରାପଦ ହେବ ବୋଲି ସଦୟ ଉପଦେଶ ଦେଇଥିଲେ । କହିବା ବାହୁଲ୍ୟ ଯେ ମୁଁ ତାଂକ ବାରଣ ନ ମାନି ଉକ୍ତ ସଭାରେ ଯୋଗ ଦେଇଥିଲି ଏବଂ କେଉଁଠି କୌଣସି ବିପଦର ସମ୍ମୁଖୀନ ହୋଇ ନଥିଲି । ଏହିଭଳି ମୋତେ ହତ୍ୟା କରିବାର ପରିକଳ୍ପନା କରାଯାଇଛି ବୋଲି ବେଳେବେଳେ ଚିଠିମାନ ମଧ୍ୟ ମିଳିଥାଏ ଏବଂ ମୋତେ ସାବଧାନ କରି ଦିଆଯାଇଥାଏ ।

## ବହିର୍ଯାତ୍ରା

ଏଇଭଳି ନାନା ଅନୁକୂଳ-ପ୍ରତିକୂଳ ଅବସ୍ଥା ଭିତର ଦେଇ ମୋର ଦୈନଂଦିନ ସାହିତ୍ୟିକ ଜୀବନ ଅଗ୍ରସର ହୋଇଥାଏ । ତାହା ପୁଣି ଏ ବୟସରେ । ଏଇଥିରୁ ଓଡ଼ିଶାର ଜନସାଧାରଣ ମୋର ସାଂପ୍ରତିକ ସ୍ଥିତି, ଗତି ଓ ଭିତ୍ତିର କଳନା କରିପାରିବେ । ମୁଁ ଏଭଳି ଅସୌଜନ୍ୟପୂର୍ଣ୍ଣ ବ୍ୟବହାର ପୃଥିବୀର ଅନ୍ୟ କୌଣସି ଦେଶରେ ପାଇ ନାଇ କି ଅନ୍ୟ କିଏ ପାଇବାର ଜାଣି ନାଇ । ଭାରତବର୍ଷର ପ୍ରାୟ ସମସ୍ତ ଅଂଗରାଜ୍ୟରେ ମୁଁ ଦୀର୍ଘ ସମୟ ଅତିବାହିତ କରିଛି । ପୃଥିବୀର ବିଭିନ୍ନ ଦେଶମାନଂକରେ (ଯଥା, ଅଷ୍ଟ୍ରେଲିଆ, ନ୍ୟୁଜିଲ୍ୟାଂଡ, ଇଂଡୋନେଶିଆ, ଶ୍ୟାମ, ଜାପାନ, ବାଂଲାଦେଶ, ଶ୍ରୀଲଂକା, ବର୍ମା, ଆମେରିକା, ଇଂଲଂଡ, ଫ୍ରାନ୍ସ, ଇଟାଲୀ, ଜର୍ମାନୀ ସୁଇଜରଲ୍ୟାଂଡ୍, ମିଶର ଓ ସ୍କାଂଡିନେଭି-ଆନ ଦେଶମାନଂକରେ) ବହୁବାର ବିଭିନ୍ନ ଅନୁଷ୍ଠାନମାନଂକ ଆମଂତ୍ରଣ ଓ ଆନୁକୂଲ୍ୟରେ ଦୀର୍ଘ ଦିନ କଟାଇବାର ସୁଯୋଗ ପାଇଛି । ସବୁଠି ମୁଁ ପାଇଛି ଅକୃପଣ ସ୍ନେହ, ଶ୍ରଦ୍ଧା, ଆତିଥ୍ୟ ଓ ସମ୍ମାନ ଏବଂ ଅକାତର ସାହାଯ୍ୟ ସହାନୁଭୂତି —ପଛରୁ ଛୁରୀଭୁଷା ବା ଗୋଡ଼ଟଣା ନୁହେଁ । ଆମ ଦେଶ ଭଳି ସ୍ନେହମମତା-ବର୍ଜ୍ଜିତ, ଈର୍ଷାପରାୟଣ ଏବଂ ଅରୁଚିକର ଜଳବାୟୁ ପୃଥିବୀରେ ଅନ୍ୟ କେଉଁଠି ଅଛି ବୋଲି ମୋର ମନେ ହୁଏ ନାଇଁ । ଏହାହିଁ ଯଦି ଆମର ଚାରିତ୍ରିକ ବିଶେଷତ୍ୱ କିଂବା ଜାତିଗତ ସ୍ୱାତଂତ୍ର୍ୟ ହୁଏ, ତେବେ ମୁଁ ସେଥିରେ ଗର୍ବିତ ହେବି ନା ଲଜ୍ଜିତ ହେବି ତାହା ନ କହିଲେହିଁ ଭଲ । ବଡ଼ ଦୁଃଖର ବିଷୟ ଆମ ଦେଶରେ ତୁଂଗ ବ୍ୟକ୍ତିଂକଠାରୁ ଆରଂଭ କରି ଘୃଣିତ କୁହା·ବ୍ୟବସାୟୀଂକ ପର୍ଯ୍ୟନ୍ତ ସମସ୍ତଂକୁ ଏକ ଅଦ୍ଭୁତ କ୍ଷୁଦ୍ରତା ଓ କୂପମଂଡୁକତା ଗ୍ରାସ କରିଥିବାର ଦେଖାଯାଏ । ଏହା

ସେମାନଂକର ମାନସିକ ଦାରିଦ୍ର୍ୟ ଓ କ୍ଲୀବତ୍ୱରହିଁ ନିଦର୍ଶନ, ଯେଉଁଥିପାଇଁ ଆମ ଦେଶର ସଂକୀର୍ଣ୍ଣ ପରିବେଶ ଓ ସାଣ୍ଡୁତ୍ୱହିଁ ଦାୟୀ । ଏ ସବୁର ମୂଳରେ ଅଛି ଆମ ଦେଶର ଉକ୍କଟ ଦାରିଦ୍ର୍ୟ ଓ ଜୀବନଧାରଣର କ୍ରମନିମ୍ନ ମାନ । ପ୍ରଚୁର ଭୂସଂପଦ, ଓ ଅପର୍ଯାପ୍ତ ପ୍ରାକୃତିକ ଦାନର ଅଧିକାରୀ ହୋଇ ମଧ୍ୟ ଯେଉଁ ଦେଶ ଦରିଦ୍ରତମ ଦେଶ, ତାର ଜାତୀୟ ଚରିତ୍ରରେ ଏଭଳି ଏକ ସ୍ୱବିରୋଧର ପ୍ରତିଫଳନ କିଛି ଅସ୍ୱାଭାବିକ ନୁହେ । ଏକଦା ପୁରୀ-କୋଣାର୍କ-ଭୁବନେଶ୍ୱର ମଂଦିର ନିର୍ମାତା ଜାତିର ଜୀବନରେ ଏହା ଚରମ ଅବକ୍ଷୟର ସୂଚନା ଛଡ଼ା ଆଉ କଣ ହୋଇପାରେ ? ସେଥିପାଇଁ ହିଁ ମୁଁ ବିଶେଷ ଭାବରେ ଶଂକିତ । ମୁଁ ନିଜ ପାଇଁ ଯେତେ ଚିଂତିତ ନୁହେଁ, ଆଗାମୀ ବଂଶଧରମାନଂକ ଭବିଷ୍ୟତ ଦିକ୍‌ବଳୟ କଥା ଭାବିହିଁ ସେତେ ଦୁଶ୍ଚିଂତାଗ୍ରସ୍ତ । ଏ ଦୁଶ୍ଚିଂତା ହାତରୁ ସହଜରେ ରକ୍ଷା ନାଇ ।

ସେ ଯାହାହେଉ ସତ୍ୟକୁ ଧୂଆଁଳିଆ କରିବା ପାଇଁ ଏ ସମସ୍ତ ଅପଚେଷ୍ଟା ଓ ଅପପ୍ରଚାର ଯେ ନିଶ୍ଚୟ ଦିନେ ପଂଡ ହେବ ଏଥିରେ କୌଣସି ସଂଦେହ ନାଇ । ତୁଂଦୁଭିର ହାଡ଼ ପରି ଏଇ ସମସ୍ତ ବାଧା ବିପଦକୁ ମୁଁ ଯେ ବାମପାଦର ବୃଦ୍ଧାଂଗୁଷ୍ଠିରେ ହିଁ ଦୂରକୁ ଫିଂଗି ଦେଇ ଆସିଚି ଏହା ଓଡ଼ିଶାର ସୁଧୀସମାଜକୁ କିଛି ଅଛପା ନାଇ । ତଥାପି ଯାହାର ଯାହା କାମ ତାହା ତାକୁ କରିବାକୁ ଦେବା ହିଁ ଉଚିତ । ତା'ନହେଲେ ଏଇ ପେଶାଦାର କୁତ୍ସାପ୍ରଚାରକମାନେ ଆଉ କରିବେ କଣ ? ବଂଚିବେ କିପରି ?

କଥା ହେଲା, ଓଡ଼ିଆ ସାହିତ୍ୟକୁ ଏଇ ଭ୍ରଷ୍ଟାଚାରୀ ଅଧ୍ୟାପକ-ଅଫିସର-ଗବେଷକ-ମୂଲ୍ୟାୟକ ଗୋଷ୍ଠୀର ଚକ୍ରାଂତରୁ ସବୁମଂତେ ରକ୍ଷା କରିବାକୁ ହେବ । ତା' ନହେଲେ ଆଧୁନିକ ସାହିତ୍ୟର ଭବିଷ୍ୟତ ବୋଲି ଆଉ କିଛି ରହିବ ନାଇ । ସାହିତ୍ୟରେ ମୂଲ୍ୟବୋଧ ନଷ୍ଟ ହୋଇଗଲେ ଏବଂ ନିରପେକ୍ଷ ସମାଲୋଚନା ଅଭିରୁଚିପୂର୍ଣ୍ଣ ମୂଲ୍ୟାୟନ ଦ୍ୱାରା ସ୍ଥାନଚ୍ୟୁତ ହେଲେ ତେଣିକି ସାହିତ୍ୟ ହେବ କେବଳ କେତେକ ନ୍ୟସ୍ତସ୍ୱାର୍ଥଂକର ଏକ ଗୋଚର ଭୂଇଁ, କେତୁଟା ଛୋଟ ବଡ଼ ପ୍ରାଇଜ୍ ପକେଟସ୍ଥ କରିବାର ଏକ ସୁଲଭ ଯଂତ୍ର ମାତ୍ର । ଉତ୍କର୍ଷ-ଅପକର୍ଷ ବୋଲି ଆଉ କିଛି ରହିବ ନାଇ । ଯିଏ କେତେଜଣ ଅଧ୍ୟାପକଂକୁ ହାତ କରି ପାରିଲା ଏବଂ ଏକ ଗୋଷ୍ଠୀ ଗଢ଼ି ପାରିଲା ଏବଂ ଟଂକା ପଇସା ଖରଚ କରି ପାରିଲା ସେଇ ହେବ କେବଳ ଏ ଦେଶରେ ବଡ଼ କବି ଏବଂ 'ଆଗାମୀ ଦୁଇଶ ବର୍ଷର ମହାକବି' । ସାଂପ୍ରତିକ ଓଡ଼ିଆ ସାହିତ୍ୟକୁ ଏକ ପାରିବାରିକ ଏବଂ ଗୋଷ୍ଠୀ ଷଡଯଂତ୍ରର ବ୍ୟୂହ ହେବାର ନିଶ୍ଚିତ ପରିଣାମରୁ ରକ୍ଷା କରି ପାରିବ କିଏ ?

ଏଇ ଗୋଷ୍ଠୀର ସବୁ କେଇଟି ଲୋକ ଏକ ଫିଂପେମର ପାଠ୍ୟପୁସ୍ତକ ଜଗତର ବାସୀଂଦା—ଯେଉଁମାନେ କି ଜାତୀୟ ଚେତନାର ମହାସ୍ରୋତରୁ ଶୋଚନୀୟ

ଭାବରେ ବିଚ୍ଛିନ୍ନ । ଏମାନଂକ ଜୀବନରେ ନା ଅଛି କୌଣସି ଅଭିଜ୍ଞତାର ପରିସର ନା ଅଛି କୌଣସି ସଂଗ୍ରାମ ବା ସଂଘର୍ଷ ସହିତ ସାମାନ୍ୟତମ ପରିଚୟ । ଏମାନେ ମଣିଷ ଜୀବନକୁ ନିରୀକ୍ଷଣ କରଂତି କ୍ଲାସରୁମର ନିଷିଦ୍ଧ ଝରକା ଫାଂକରୁ କିଂବା ଅଫିସ୍ ଫାଇଲପତ୍ରର ସ୍ତୂପ ଭିତରୁ । ଦେଶ ବିଦେଶର ସାହିତ୍ୟ ଆଂଦୋଳନ କିଂବା ସାହିତ୍ୟ ଅଭିମୁଖ୍ୟ ସହିତ ଏମାନଂକର ଦୂରତମ ଯୋଗସୂତ୍ର ଅଛି କି ନାଇ ସଂଦେହ । ଏଇ ଦେବାଳିଆ ବୁଦ୍ଧିଜୀବୀମାନେ ଆଜି ନିଜ ନିଜର ପଦପଦବୀ ବଳରେ ସାଜିଛଂତି ଓଡ଼ିଆ ସାହିତ୍ୟର ବିଚାରକ ଓ ମୂଲ୍ୟାୟକ, ଏହାଠାରୁ ବଳି ଦୁର୍ଭାଗ୍ୟର ବିଷୟ ଆଉ କଣ ହୋଇପାରେ ?

ଏଇ ପଦପଦବୀ ଓ ଧରାଧରି ବିଦ୍ୟା ବଳରେ ସାଧାରଣ କବି ଶ୍ରେଷ୍ଠ ବିବେଚିତ ହୋଇ ପୁରସ୍କାର ପାଉଥିବା ଏଇ ଗୋଷ୍ଠୀ-ଚକ୍ରାଂତର ଅନ୍ୟ ଏକ ଦୃଷ୍ଟାଂତ । ଜନଜୀବନରେ ଏବଂ ଜାତୀୟ ସ୍ତରରେ ଏ ସବୁ ପୁରସ୍କାରର କୌଣସି ସ୍ୱୀକୃତି ବା ପ୍ରଭାବ ନଥିଲେ ମଧ୍ୟ ଏହା ଆଗାମୀ ବଂଶଧରମାନଂକ ମନରେ ବିଭ୍ରାଂତି ସୃଷ୍ଟି କରିବ ନାଇ କି ?

ଖାଲି ବ୍ୟକ୍ତିଗତ କୁତ୍ସା-ପ୍ରଚାର ନୁହେଁ, ଏଇ ଅଶୁଭ ଗୋଷ୍ଠୀର ତତ୍ତ୍ୱକାର ଓ ତତ୍ତ୍ୱାବଧାରକ, ପ୍ରବୀଣ ଇଂରଜୀ ଅଧ୍ୟାପକ ମହାଶୟ ନାନା ଉଦ୍‌ଭଟ ତତ୍ତ୍ୱ ଓ ଅସତ୍ୟ ତଥ୍ୟ ପରିବେଷଣ କରି ଏ ଜାତିର ସାହିତ୍ୟ-ବିଚାରକୁ ଗତ କୋଡ଼ିଏ ବର୍ଷ ହେଲା ବିଭ୍ରାଂତ କରି ଆସୁଛଂତି । ୧୯୫୫ ମସିହାରେ ମୁଁ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟଂକ ଆମଂତ୍ରଣ କ୍ରମେ ହାର୍ଭାର୍ଡ ଆଂତର୍ଜାତିକ କଳା ବିଜ୍ଞାନ ସେମିନାରରେ ଭାଷଣ ଦେବାକୁ ପ୍ରଥମେ ଆମେରିକା ଓ ପରେ ୟୁରୋପରେ ଅବସ୍ଥାନ କରୁଥିବା ଅବସରରେ, ଭାରତରେ ମୋର ଦୀର୍ଘ ଅନୁପସ୍ଥିତିର ସୁଯୋଗ ନେଇ ସାହିତ୍ୟରେ ଏ ଠିକାଦାର ମହାଶୟ ଓଡ଼ିଆ କବିତାରେ ଚେତନାର ସମନ୍ୱୟ ୧୯୫୪-୫୫ରୁ ଆରଂଭ ହୋଇଛି ବୋଲି ଏକ ଉଦ୍‌ଭଟ ତଥ୍ୟ ଏକ କବିତା-ସଂକଳନର ଭୂମିକା ଛଳରେ ସର୍ବ ପ୍ରଥମେ ପ୍ରଚାର କରଂତି । ଏଇ 'ଚେତନାର ସମନ୍ୱୟ' ମୂଳରୁ ଥିଲା କି ନାଇ ସେ ବିଷୟରେ ଏ ସୂତ୍ରଟିର ପ୍ରବର୍ତ୍ତକ ସ୍ୱୟଂ ଏଲିୟଟ ମଧ୍ୟ ସଂଦିହାନ ଥିଲେ । ହାର୍ଭାର୍ଡ ଆଂତର୍ଜାତିକ ସେମିନାରରେ ମଧ୍ୟ ପୃଥିବୀର ପ୍ରତ୍ୟେକ ଦେଶର ପ୍ରତିନିଧି ସାହିତ୍ୟିକ ଓ ସମାଲୋଚକ ଏଇ ତତ୍ତ୍ୱର ଅସ୍ତିତ୍ୱ ସଂବଂଧରେ ସଂଦେହ ପ୍ରକାଶ କରିଥିଲେ । ସେ ଯାହାହେଉ, ଏହା ପ୍ରଚାରିତ ଆକାରରେ ଥାଉ କି ନଥାଉ, ଏହାର ସଚେତନ ପ୍ରୟୋଗ ଓଡ଼ିଆ କବିତା କ୍ଷେତ୍ରରେ ୧୯୪୨-୪୩ ମସିହାରୁ ପ୍ରଥମେ 'ବାଜି ରାଉତ'ର ଅଂଶବିଶେଷ (୧୯୪୨), 'ରାମନାମ ସତ୍ୟ ହେ' (୧୯୪୩), 'ଚିଂତାମଣି ମହାଂତି' (୧୯୪୩), 'ଲାବଣ୍ୟବତୀକୁ ଚଂଦ୍ରଭାନୁର ଚିଠାଉ' (୧୯୪୩), ସେଲଟର (୧୯୪୩) ଏବଂ

୧୯୪୫-୪୬ ଆଡ଼କୁ ପ୍ରକାଶିତ 'ପ୍ରତିମା ନାୟକ', 'ଅଳକା ସାନ୍ୟାଲ' 'ଅଦିନ ବର୍ଷା', 'ଗୋପବଂଧୁ ଦାସ' ପ୍ରଭୃତି କବିତା ମାଧ୍ୟମରେହିଁ ହୋଇଥିଲା, ଦୀର୍ଘ ୧୪ ବର୍ଷ ପରେ ୧୯୫୪-୫୫ ସାଲରେ ନୁହେଁ । ଏକଥା ମୁଁ ପ୍ରାମାଣିକ ତଥ୍ୟ ସହ ମୋର 'ସାହିତ୍ୟ-ବିଚାର ଓ ମୂଲ୍ୟବୋଧ' ଗ୍ରଂଥରେ ପ୍ରତିପାଦିତ କରିଛି । ମାତ୍ର ସେ ସବୁ ତଥ୍ୟଗତ ପ୍ରମାଣକୁ ତଥ୍ୟ ଦ୍ୱାରା ଖଂଡନ କରି ନପାରି ଏମାନେ କାଁ ଭାଁ କେତେକ ପ୍ରଭାବିତ ଅଧ୍ୟାପକଂକୁ ଧରି ପୁଣି ବିଭ୍ରାଂତିକର ପ୍ରବଂଧମାନ ଲେଖାଇ ପତ୍ରପତ୍ରିକାରେ ପ୍ରକାଶ କରାଉ ଥିବାର ଦେଖାଯାଉଛି । ଏଇ ଅଧ୍ୟାପକମାନଂକ ମଧ୍ୟରୁ ବ୍ରହ୍ମପୁରର ଜଣେ ଅଧେ ଇଂରାଜୀ ଅଧ୍ୟାପକ କଣ ଏକ ପତ୍ରିକା ପ୍ରକାଶ କରିବା ପାଇଁ ଜଣେ କବିଂକଠାରୁ ଦୁଇ ହଜାର ଟଂକା ନେଇଥିବା କଥା ତାଂକ ନିଜ ମୁହଁରୁ ଜଣା ପଡ଼ିଛି । (ସେ ମହାଶୟହିଁ ବର୍ତ୍ତମାନ ବେଶୀ ପ୍ରଗଳ୍ଭ ଏବଂ ଉପ-ତତ୍ତ୍ୱକାର ହୋଇ ଉଠିଛଂତି ।) ଏ ସବୁ ପ୍ରଚ୍ଚର ଅପପ୍ରଚ୍ଚରର ମୁଖପତ୍ର ସାଜିଛି ସେଇ ସାହିତ୍ୟ-ପତ୍ରିକାଟି ଯାହା ତାରୁଣ୍ୟର ଛଳନାରେ ରୂପ-ରସ-ଚିତ୍ର-ହୀନ ଦୁର୍ବୋଧ୍ୟ କବିତା ସୃଷ୍ଟି ପାଇଁ ଦାୟୀ । ଓଡ଼ିଶାରେ ସର୍ବତ୍ର ଆଜି ଦୁର୍ବୋଧ୍ୟ କବିତା ବିରୁଦ୍ଧରେ ସ୍ୱର ଉତ୍ତୋଳିତ ହେବା ଶୁଣାଯାଏ । ପୁରୀ, ଭଦ୍ରଖ, ବ୍ରହ୍ମପୁର, କଟକ, ସଂବଲପୁର ସମେତ ବହୁ ସହରରେ ଦୁର୍ବୋଧ୍ୟ କବିତା ବିରୋଧରେ ନୂତନ ସାହିତ୍ୟିକ-ଗୋଷ୍ଠୀମାନ ମୁଂଡ ଟେକି ଉଠିଛି । ଓଡ଼ିଶାରେ ଏଇ ପତ୍ରିକା ମାରଫତରେହିଁ ଦୁର୍ବୋଧ୍ୟ ବାତୁଳ କବିତା ପ୍ରସାର ଲାଭ କରିଛି । ବର୍ତ୍ତମାନ ଓଡ଼ିଆ ସାହିତ୍ୟ-କ୍ଷେତ୍ର ହୋଇଛି ଏକ ନେଣ-ଦେଣର ପ୍ରଶସ୍ତ ଇଲାକା ଏବଂ କେତେକ ଦେବାଳିଆ କବିଂକର ବାଣିଜ୍ୟ ବିଭର । ସାହିତ୍ୟ ଏଭଳି ନିଲାମ ଠେକଂଦ୍ରରେ ପରିଣତ ହେବା ଓଡ଼ିଶାରେ ଏଇ ପ୍ରଥମ ଏବଂ ବୋଧହୁଏ ଶେଷ,— କାରଣ ଏଭଳି କିଣାବିକା ବା Call Girls ବୃତ୍ତିକୁ ସାହିତ୍ୟରେ ଆଉ ବେଶୀଦିନ ଚ୍ଚଳିବାକୁ ଦିଆଯିବ ନାହିଁ ।

ଆଉ ଏକ କ୍ଷୁଦ୍ର ଗୋଷ୍ଠୀ ଦେଖାଯାଂତି ଯେଉଁମାନେ କି ବିପ୍ଳବ କହିଲେ କବିତା ଏବଂ କବିତା କହିଲେ ବିପ୍ଳବ କଥା ଆଉଡ଼ାଂତି । ସେମାନେ ନା ରସୋତ୍ତୀର୍ଣ୍ଣ କବିତା ନା ବିପ୍ଳବ କାହାର କିଛି ଧାର ନ ଧାରି ଶୁଖିଲାରେ ବାଳିଆ ପିଟିଥାଂତି ଏବଂ ବଡ଼ ବଡ଼ ଶୁଣା ତତ୍ତ୍ୱକଥା ବଖାଣିଥାଂତି । ଏମାନଂକୁ ଖୁବ୍ ହେଲେ ବିପ୍ଳବର ଚିଲମ କୁହାଯାଇ ପାରିବ । ଏମାନେ ପୃଥିବୀ ଦୁଇ ଭାଗରେ ବିଭକ୍ତ ହୋଇଗଲାଣି, ତେଣୁ ସାହିତ୍ୟ ମଧ୍ୟ ଦୁଇ ଭାଗ ହୋଇଯାଉ ବୋଲି ଜୁଆ ଉଠାଂତି । କାରଣ ତା'ହେଲେ ଏମାନେ କୌଣସି ଗୋଟାଏ ଛାଉଣିର ଲେବଲ ମାରି ଅଂତତ କିଛିଦିନ ତିଷ୍ଠି ଯାଇପାରିବେ । ଏଇ ତତ୍ତ୍ୱଦର୍ଶୀଂକ ଲେଖା ପୁଣି ପ୍ରକାଶ ପାଏ ସେଇ ସାହିତ୍ୟ-ପତ୍ରିକାରେ ଯାହା ସାହିତ୍ୟ କହିଲେ

ସିନେମା ଏବଂ ସିନେମା କହିଲେ ସାହିତ୍ୟ ବୁଝେ । ସାହିତ୍ୟ କେତେବେଳେ ରାଜନୀତିକ ଉଦ୍ଦେଶ୍ୟ ସାଧନର ହାତବାରିସି ହୁଏ ତ କେତେବେଳେ ବ୍ୟବସାୟ ବୃତ୍ତିରେ ପରିଚାରିକା ବନିଯାଏ ।

ସେ ଯାହାହେଉ, ସାହିତ୍ୟରେ ପ୍ରକୃତ ମୂଲ୍ୟାୟନ ଲୋପପାଇ ଯାଇଥିବାରୁ ଯାହା ବାକୀ ରହିଚି ତାହା ହେଲା କେବଳ ପ୍ରକାଶ୍ୟ ଗୋଷ୍ଠୀ-ପ୍ରଚାରର ହିଁ ଅନ୍ୟ ନାମ, ଯାହାକୁ ସାହିତ୍ୟ-ବିଚାର କହିବା ସଂପୂର୍ଣ୍ଣ ଛଳନା ହେବ । ସାଂପ୍ରତିକ ସାହିତ୍ୟିକ ଦୃଶ୍ୟପଟ କହିଲେ ଆଜି କେବଳ ବୁଝାଏ ଗୋଷ୍ଠୀଗଠନ ଏବଂ ନାନା ଅପକୌଶଳ ଦ୍ୱାରା ସାହିତ୍ୟିକ ମାନ ନିର୍ଦ୍ଧାରଣ କରିବାର ପ୍ରବୃତ୍ତି । ଏହା ଦ୍ୱାରା ଆଗାମୀ ବଂଶଧରମାନେ ସଂପୂର୍ଣ୍ଣ ବିଭ୍ରାଂତ ଓ ପଥଭ୍ରଷ୍ଟ ହେବେ ନାଇ ତ ଆଉ କ'ଣ ? ଯେଉଁ ସାହିତ୍ୟକୃତି କେବଳ ସଂଗଠିତ ପ୍ରଚାର କିଂବା ଅପକୌଶଳ ଦ୍ୱାରା ସାମୟିକ ସ୍ୱୀକୃତି ଲାଭ କରେ କିଂବା କେତୁଟା ପୁରସ୍କାର ହାସଲ କରେ ତାହା ମହାକାଳର ଅଳିଆଟୋକେଇରେ ମଧ୍ୟ ସ୍ଥାନ ପାଇବ କି ନାଇ ସଂଦେହ । ଏଭଳି ବହୁ ପୁରସ୍କାରପ୍ରାପ୍ତ ଲେଖକଂକ ନାମ ଦେଶରେ କେହି ସ୍ମରଣ ମଧ୍ୟ ରଖଂତି ନାଇ । ସାଧାରଣ ଜୀବନରେ ସେମାନଂକର ପ୍ରଭାବ ଅତ୍ୟଂତ ଅସ୍ପଷ୍ଟ ଓ କ୍ଷୀଣ । କାଳ ସେମାନଂକୁ ଦୂରକୁ ଫିଂଗି ଦେଇଚି । ସମୟହିଁ ସାହିତ୍ୟର ଶ୍ରେଷ୍ଠ ବିଚାରକ ଏ କଥା ଏ ଅପକୌଶଳୀ ଗୋଷ୍ଠୀ ଭୁଲି ଯାଉଛଂତି କିପରି ?

ଓଡ଼ିଆ ସାହିତ୍ୟର—କି ପ୍ରାଚୀନ କି ଆଧୁନିକ, ଏକ ପୁନଃମୂଲ୍ୟାୟନ ହେବା ଉଚିତ । ପ୍ରାଚୀନ ସାହିତ୍ୟର କୌଣସି ଯୁଗଭିତ୍ତିକ କିଂବା ବସ୍ତୁ-ଚେତନା କାରଣ ସମନ୍ୱିତ ମୂଲ୍ୟାଂକନ ଏ ପର୍ଯ୍ୟଂତ କରାଯାଇ ନାଇ । ଯାହା ହୋଇଚି ତାହା କେବଳ ଅତି ମାନ୍ଧାତା ଅମଳର ଭାବପ୍ରବଣ ଦୃଷ୍ଟିକୋଣରୁ । ଉଦାହରଣ ସ୍ୱରୂପ ଭଂଜକଂର ମୂଲ୍ୟାଂକନ ତାଂକ ଯୁଗର ପ୍ରତିନିଧି କବି ରୂପେ ନ ହୋଇ ପଂଚାୟତୀ ରାଜ୍‌ର ପ୍ରବର୍ତକ ଭାବରେ ଯେପରି ବେଳେ ବେଳେ କରାଯାଉଚି ତାହା ସତରେ ବଡ଼ ହାସ୍ୟାସ୍ପଦ । ଆଧୁନିକ ସାହିତ୍ୟରେ ମୂଲ୍ୟାୟନ ହୋଇଚି କେତେକ ଚାଲବାଜ୍ ଅଧ୍ୟାପକଂକ ଦ୍ୱାରା—ଯେଉଁମାନେ ତଥ୍ୟ ଓ ରସବିଚାରକୁ ଛାଡ଼ି, ଅଭିରୁଚିପୂର୍ଣ୍ଣ, ମଂତବ୍ୟସର୍ବସ୍ୱ ଲେଖାକୁ ସାହିତ୍ୟ-ସମୀକ୍ଷାର ନାମାଂତର ବୋଲି ଚଳାଇ ନେବାକୁ ଚାହାଂତି, ସମାଲୋଚନାର ମୂଳତତ୍ତ୍ୱକୁ ଛାଡ଼ି କେବଳ ଲବୀ-ତତ୍ତ୍ୱହିଁ ପ୍ରଚାର କରଂତି । ଓଡ଼ିଆ ସାହିତ୍ୟର ବୈଜ୍ଞାନିକ ପୁନଃମୂଲ୍ୟାୟନ କରି ପାରିବେ କେବଳ ସଚେତନ ରସଜ୍ଞଶ୍ରେଣୀ ଯେଉଁମାନଂକର କୌଣସି ରକ୍ଷିତସ୍ୱାର୍ଥ ନାଇ ଏବଂ ଯେଉଁମାନେ ଗୋଷ୍ଠୀ ବିଚାରରୁ ସଂପୂର୍ଣ୍ଣରୂପେ ମୁକ୍ତ । ସାହିତ୍ୟ-ବିଚାରକୁ ଏକଚାଟିଆ କରି ରଖିଥିବା କେତେକ ମତଲବବାଜ୍ ଅଧ୍ୟାପକ-ଅଫିସର ଗୋଷ୍ଠୀ କବଳରୁ ସାହିତ୍ୟ-ସମୀକ୍ଷା ଉଦ୍ଧାର ନ ପାଇବା

ଯାଏ ଆମ ଦେଶରେ ସୁସ୍ଥ ସମାଲୋଚନା ପରଂପରା ଗଢ଼ି ଉଠି ପାରିବ ନାଇ । କାରଣ ସମୀକ୍ଷକ ସାଜିଥିବା ଅଧ୍ୟାପକମାନେ ହେଉଛଂତି ବଡ଼ ବଡ଼ ଅଫିସର ମାନଂକର ବୋଲକରା ଲୋକ । ସେଇମାଂନଙ୍କୁ ସଂତୁଷ୍ଟ କରି ନିଜ ନିଜ ସ୍ୱାର୍ଥ ହାସଲ କରିବାହିଁ ସେମାନଂକର ଏକମାତ୍ର ଲକ୍ଷ୍ୟ ।

ଏ'ଲି ସେତିକି ନୁହେଁ. 'ଦିଗଂତ ମ୍ୟୁଜିୟମ' ସଂବଂଧରେ ମଧ୍ୟ କେତେକ କୁହାଟାବୀ ଓ ପିତପତ୍ରୀ ସଭାସମିତିରେ ଏବଂ ପତ୍ର ପତ୍ରିକା ସ୍ତଂଭରେ ବେଳେ-ବେଳେ ସ୍ୱନାମୀ ଓ ବେନାମୀ ମିଥ୍ୟାପ୍ରଚାର ଚଳାଇବାର ଲକ୍ଷ୍ୟ କରାଯାଉଛି । ଦିଗଂତ ମ୍ୟୁଜିୟମ କିଛି ଲୁଚଛପା ବ୍ୟାପାର ନୁହେଁ । ଓଡ଼ିଶାର ଏକାଧିକ ରାଜ୍ୟପାଳ, ବହୁ ମଂତ୍ରୀ, ଉପମଂତ୍ରୀ, କେଂଦ୍ରମଂତ୍ରୀ, ଭାରତବର୍ଷର ବହୁ ବିଶିଷ୍ଟ ସାହିତ୍ୟିକ, ସଂପାଦକ ଓ ଗବେଷକ ଏହା ପରିଦର୍ଶନ କରିଛଂତି ଏବଂ କରୁଛଂତି ଏବଂ ଏହାର ଉଚ୍ଚପ୍ରଶଂସା କରିଛଂତି । 'ଦିଗଂତ' ଓ 'ଅମୃତବଜାର ପତ୍ରିକା' ଓ ଇଂରାଜୀ ପୁସ୍ତିକାମାନଂକ ମାଧ୍ୟମରେ, ଏବଂ ପୋଥି ଓ ତହିଁର ମାଇକ୍ରୋଫିଲମ୍ ଆଦିର ପ୍ରଦର୍ଶନୀ ଜରିଆରେ ବହୁ ଅର୍ଥ ଓ ପରିଶ୍ରମ ବ୍ୟୟରେ ସଂଗୃହୀତ ମୂଲ୍ୟବାନ ପ୍ରତ୍ନଦ୍ରବ୍ୟ ଓ ପୋଥିପତ୍ରର ଫଟୋଚିତ୍ର ଓ ଟିକିନିଖି ବିବରଣୀ ପ୍ରକାଶ କରାଯାଇଛି ଏବଂ ସରକାରଂକର ବିଭିନ୍ନ ବିଭାଗକୁ ଓ ବିଭିନ୍ନ ଜିଲ୍ଲାପାଳ-ମାନଂକୁ ଯଥାବିଧି ଜଣାଇ ଦିଆଯାଇଛି । ଓଡ଼ିଶା ସରକାର ଲକ୍ଷାଧିକ ଟଂକା ବିନିମୟରେ ଦିଂଗତ ମ୍ୟୁଜିୟମ କିଣିବାକୁ ପ୍ରସ୍ତାବ ଦେଇଥିଲେ ମଧ୍ୟ ନାଂଦନିକ ମୂଲ୍ୟବୋଧ ଦୃଷ୍ଟିରୁ ଏହାକୁ ହସ୍ତାଂତର କରିବା ସଂଭବ ହୋଇ ନାଇ । ତେଣୁ ଏଇ ପେଶାଦାର କୁହାକାରୀମାନଂକ ଶ୍ୱାନ-ଚିତ୍କାର ବା ମିଥ୍ୟାପ୍ରଚାରରେ କେହି ସହଜରେ ଭୁଲିବେ ନାଇ ଏହା ସେମାନେ ଜାଣିବା ଦରକାର । ଏ ଦେଶର ଜନସମାଜ ଏମାଂନଙ୍କୁ ଭଲଭାବରେ ଜାଣେ । ଏଭଳି ପୋଥି ଓ ମାଇକ୍ରୋଫିଲ୍ମର ପ୍ରଦର୍ଶନୀ ଗତ ତା ୫ । ୧୦ । ୭୦ରେ କଟକରେ ଡଃ ସୁନୀତି କୁମାର ଚ୍ୟାଟାର୍ଜି ଉଦ୍‌ଘାଟନ କରିଥିଲେ ଏବଂ ଶ୍ରୀ ହରେକୃଷ୍ଣ ମହତାବ୍ ଏଥିରେ ସଭାପତିତ୍ୱ କରିଥିଲେ ।

ଏ କବିତା-ସଂକଳନରେ ସନ୍ନିବିଷ୍ଟ କାବ୍ୟ-ନାଟିକା 'ପୂର୍ବାପର' ୧୯୭୪ ମସିହା ନଭେଂବର ତା୧୨ରିଖରେ କଟକ ଶୈଳବାଳା ମହିଳା କଲେଜର ଛାତ୍ରୀସଂସଦ ଦ୍ୱାରା ମଂଚସ୍ଥ ହୋଇଥିଲା । ବିଭିନ୍ନ ଭୂମିକାରେ କେତେକ ଛାତ୍ରୀ ସୁଂଦର ଅଭିନୟ କରିଥିଲେ । ଆଧୁନିକ କବିତାକୁ ନିଜ ଗୋଡ଼ରେ ଛିଡ଼ା ହେବା ଦିଗରେ ସାହାଯ୍ୟ କରିବା ଉଦ୍ଦେଶ୍ୟରେହିଁ ଏ କାବ୍ୟ-ନାଟିକାଟି ରଚିତ । ଆଧୁନିକ କବିତାରେ ପ୍ରାଚୀନ କବିତା ଭଳି ଯତି, ଯମକ, ଅନୁପ୍ରାସ, ଅଳଂକାର କିଂବା ସଂଗୀତ ନାଇ ।

ତଥାପି ଏ ସମସ୍ତ ଦ୍ୱରଇ ମଧ୍ୟ ଏହା ଏପରି କିଛି ପାଇଚି ଯାହା ତାକୁ ଆଧୁନିକ କରିଚି, ସାରଳା ଦାସଂକ ଦାଂଡିବୃତ୍ତ ଭଳି ଏକ ଅଧ୍‌ଭୁତ ଗତିଶୀଳ ବାକ୍‌ଭଂଗୀର ତଥା ପ୍ରାଣପ୍ରାଚୁର୍ଯ୍ୟର ଅଧିକାରୀ କରିଚି । ସଂଗୀତ ଓ ଅଳଂକାର ବଦଳରେ ସେ ପାଇଚି ଏକ ଅଭୂତପୂର୍ବ ପ୍ରାଣଶକ୍ତି ଯାହା ରୀତି କବିତାରେ ନ ଥିଲା । ଆଧୁନିକ କବିତା କବିତା ଭାବରେହିଁ ବଂଚୁ ଏହା କବି, ପାଠକ, ଶ୍ରୋତା, ଦର୍ଶକ ସମସ୍ତଂକର ଧେୟ ହେବା ଉଚିତ । ତାହା ସଂଗୀତ ଓ ଅଳଂକାର ଉପରେ ନିର୍ଭର କରି ବଂଚିବାକୁ ଯିବ କାହିଁକି ? ରୀତି କବିତା ପାଲା, ଗୋଟି-ପୁଅ, ଦାସକାଠିଆ ପ୍ରଭୃତି ଅନୁଷ୍ଠାନ ମାଧ୍ୟମରେ ହିଁ ପ୍ରଚାର ଲାଭ କରିଥିଲା । ବର୍ତମାନ ରେଡିଓ, ଟେଲିଭିସନ୍, ଖୋଲା କବିତା ଆସର ପ୍ରଭୃତି ଅନୁଷ୍ଠାନ ଆଧୁନିକ କବିତାକୁ ସାଧାରଣ ଜୀବନର ବିସ୍ତୃତ ଅଂଗନରେ ପ୍ରବେଶ କରିବାରେ ସାହାଯ୍ୟ କରି ପାରିବେ । ଆଧୁନିକ କବିତା ତା ନିଜ ଗୋଡ଼ରେ ଛିଡ଼ା ହେଉ ଏ ପ୍ରତ୍ୟୟ ସଂଚ୍ଚର କରିବା ଦିଗରେ ଏ କାବ୍ୟ-ନାଟିକାଟି ସଫଳ ହେଲେ ମୁଁ ସୁଖୀ ହେବି ।

## ଉଦାରତାବାଦର ସ୍ୱରୂପ

ମୋଟ ଉପରେ ଗତ ତିନି ବର୍ଷର କ୍ଷତାକ୍ତ ପଟଭୂମିରେ ଏ କାବ୍ୟ-ସଂକଳନଟିର କବିତା ଗୁଡ଼ିକ ଆଧାରିତ । ତେଣୁ ଏଥିରେ କାବ୍ୟିକ ଆବେଗ, ସୌଂଦର୍ଯ୍ୟବୋଧ ଓ ନିଃସଂଗତା ସାଂଗକୁ ଏକ ସୃଜନଶୀଳ ଗତିଶୀଳ ଜୀବନର ସମସ୍ତ ସଂଗ୍ରାମ ଓ ତିକ୍ତ ଅଭିଜ୍ଞତାର ମୁଦ୍ରାଂକ ଓ ଅଭିଜ୍ଞାନ ରହିବା ସ୍ୱାଭାବିକ । ଏଥିରେ ଥିବା କେତୋଟି 'ଶତ୍ରୁ କବିତା' ହୁଏତ ତହିଁର ନିଦର୍ଶନ ଏବଂ ସ୍ୱାଭାବିକ ପରିଣାମ ମଧ୍ୟ । ତେଣୁ ଯେଥିରେ ଯଦି କିଏ ନାକ ଟେକେ କିଂବା ଶାସ୍ତ୍ରୀୟ ବଚନ ଉଦ୍ଧାର କରେ ତାର ଉତ୍ତରରେ ମୁଁ କହିବି, ଏ ଦେଶରେ ମୋ' ଉପରେ ସଂଗଠିତ ଆକ୍ରମଣ ବର୍ଷ ବର୍ଷ ଧରି ଚାଲିଥିଲେ ମଧ୍ୟ ଜଣେ ହେଲେ କିଏ ନୀତିବାଗୀଶ ପାଟି ଫିଟାଇ କେବେ ମଂଦକୁ ମଂଦ ବା Spadeକୁ Spade କହିଛଂତି କି ? ଏ ଦେଶରେ କଣ ଜଣେ ହେଲେ ସଚେତ, ସଚ୍ଚୋଟ ଏବଂ ନିଜ ଭୂମିକା ସଂବଂଧରେ ସଚେତନ ଓ ସକ୍ରିୟ ମନନଜୀବୀ ନାହାଂତି ? ସମସ୍ତେ ଖାଲି କଣ ନୀରବ ଦର୍ଶକ, କେବଳ ମଜା ଦେଖିବାର ଲୋକ,—ନିସ୍ପୃହ ଉଦାରତାବାଦ ହିଁ ଯେଉଁମାନଂକର ଚିରଚରିତ ଅଭ୍ୟାସ ? ତେଣୁ ସେମାନଂକର ମଧ୍ୟମବର୍ଗୀୟ ଉଦାରଚେତନାର ଅର୍ଥ କଣ ? ଉଦାରବାଦର ଅର୍ଥ ଗୁଂଡାମି ଓ ହୀନ ଚକ୍ରାଂତକୁ ପ୍ରଶ୍ରୟ ଦେବା ବା ପ୍ରୋତ୍ସାହନ ଦେବା ନୁହେଁ, ବରଂ ସେ ସବୁର ମୁକାବିଲା କରିବା, ସେ ସବୁକୁ ମୂଳପୋଚ୍ଛ କରିବା । ଏ ଦିଗରେ ମୋର ଏକକ ପଦକ୍ଷେପ ସଫଳ ହେଉ ବା ନ ହେଉ,

ମୋର କ୍ଷତ ହିଁ ମୋର ସର୍ବଶ୍ରେଷ୍ଠ ପୁରସ୍କାର ଏବଂ ମୋର ସଂଗ୍ରାମ ହିଁ ମୋର ଶ୍ରେଷ୍ଠ ପରିଚୟ । ଯେଉଁମାନେ ଉପଦେଶ ଦିଅଂତି ଯେ ଏ ସବୁ ପ୍ରତି ନୀରବ ରହିବାହିଁ ଶ୍ରେଷ୍ଠ ପ୍ରତିକାର ଏବଂ କ୍ଷମାହିଁ ସର୍ବଶ୍ରେଷ୍ଠ ହତିଆର ମୁଁ ସେଇ ଉଦାରବାଦୀଂକୁ ରବୀଂଦ୍ରନାଥଂକର ଦୁଇ ଧାଡ଼ି କବିତା ଉପହାର ଦିଏଁ :—

"ଅନ୍ୟାୟ ଯେ କରେ ଅନ୍ୟାୟ ଯେ ସହେ,
ତବ ଘୃଣା ତାରେ ତୃଣ ସମ ଦହେ ।"

ଅର୍ଥାତ୍, 'ଯେ ଅନ୍ୟାୟ କରେ ଏବଂ ଯେ ଅନ୍ୟାୟ ସହେ ଉଭୟେ ଭଗବାନଂକ ନିକଟରେ ସମାନ ଦୋଷୀ । ଉଭୟେ ଘୃଣାର ପାତ୍ର ।' ଆମ ଦେଶର ଉଦ୍ୟାନ-ଷ୍ଠରୀ ଉଦାରଚେତାଂକ କବୋଷ୍ଣ ଚେତନାକୁ ଏହା ସ୍ପର୍ଶ କରିବ କି ନାଇ ଜାଣେନା । ଆମ ଦେଶରେ ମଧ୍ୟବିତ୍ତସୁଲଭ ଉଦାରବାଦ ସୁବିଧାବାଦରେହିଁ ପରିଣତ ହୋଇଚି । ଏଇ ଶିକ୍ଷିତ ସ୍ୱାଭିମାନୀ ଆତ୍ମକେଂଦ୍ରିକ ଉଦାରପଂଥୀମାନଂକୁ ମାର୍କସୀୟ ଭାଷାରେ Philistine ବା ଧୂର୍ତ୍ତ-ଭଡ଼ଂଛୁ ଶ୍ରେଣୀ କହିଲେ କିଛି ମାତ୍ର ଅତ୍ୟୁକ୍ତି ହେବ ନାଇ । ଏମାନଂକର କୌଣସି ଜିନିସରେ ନିଷ୍ଠା ନାଇ—ସବୁଥିରୁ କିଛି କିଛି ଫାଇଦା ଉଠାଇବାହିଁ ଏମାନଂକର ଏକମାତ୍ର ଲକ୍ଷ୍ୟ । ଏ ଗଂଧବଣିକ ଗୋଷ୍ଠୀ ଯିଏ ଯାହା ହୁଅଂତୁ କିଛି ଯାଏ ଆସେ ନାଇ । ଏମାନେ ଶତ୍ରୁ ହେଲେ କିଛି କ୍ଷତି ନାଇ, ମିତ୍ର ହେଲେ କିଛି ଲାଭ ନାଇ । ନିଜେ ଠିକ୍ ରହିବାହିଁ ସବୁଠାରୁ ବଡ଼ କଥା । ମଣିଷ ଏପରି ଏକ ମୁହୂର୍ତ୍ତରେ ପହଂଚେ ଯେତେବେଳେ ସେ ପ୍ରକୃତରେ ଏକାକୀ ହେବା ଉପରେହିଁ ତାର ସବୁ କିଛି ନିର୍ଭର କରେ । ସେତେବେଳେ ଶତ୍ରୁ-ମିତ୍ର ସବୁ ଏକାର୍ଥକ ହୋଇ ପଡ଼ଂତି । ନିଜେହିଁ ନିଜ ପ୍ରତି ସତ୍ୟ ହେବାଟା ସବୁଠାରୁ ବଡ଼ ସତ୍ୟ ମନେହୁଏ । ଅନ୍ୟାୟର ମୁକାବିଲା କରିବା ଅପେକ୍ଷା ଅନ୍ୟାୟକାରୀ ଶତ୍ରୁ ଯେପରି ସେମାନଂକ "ଭୀରୁ ଯୂଥୀକାଂକ ମୂତରେ ଭାସି ନଯାଏ" ସେଥିପ୍ରତି ସେମାନଂକର ନୀତିବୋଧ ଅଧିକ ଜାଗ୍ରତ ଥିବା ମନେହୁଏ । ଅଥଚ ସେମାନଂକର ଲଢ଼େଇ ଚାଲିଚି ଓ ଚାଲିଚି ଏବଂ ଚାଲିଥିବ । (ଏ ଭୂମିକାଟି ଲେଖି ପ୍ରେସକୁ ଦେବା ପରେ କେତେଜଣ ତରୁଣ ଲେଖକ ଲେଖିକା ଓ ବୁଦ୍ଧିଜୀବୀ ଏଭଳି କୁତ୍ସା-ପ୍ରଚାରର ତୀବ୍ର ନିଂଦା କରି ମୋତେ ଓ କେତେକ ପତ୍ରପତ୍ରିକାକୁ ଲେଖିଛଂତି । ଦେଖୁ ଏ ଦେଶରେ ଯେ ସଚ୍ଚୋଟ ବୁଦ୍ଧିଜୀବୀ ଅଛଂତି ତାହା ଜାଣି ଆନଂଦିତ ହୋଇଚି; ଯଦିଚ ସେମାନେ ଆମର ପରିଚିତ ଉଦ୍ୟାନଚାରୀମାନଂକ ମଧ୍ୟରୁ କେହି ନୁହଂତି ।)

ମୋର ଅନ୍ୟ କୌଣସି ବହିର ଭୂମିକା ଏତେଦୂର ବ୍ୟକ୍ତିଗତ ହୋଇ ନଥିଲା । ମୋର ଅନ୍ୟ ଗ୍ରଂଥ ଗୁଡ଼ିକର ଭୂମିକା ଏକ ଏକ ସଂଦର୍ଭ ରୂପେ

ସମାଦୃତ ଓ ସଂରକ୍ଷିତ ହୋଇ ଆସୁଛି । ମାତ୍ର କେତେକ ଅବଶ୍ୟଂଭାବୀ କାରଣରୁ ଏ ଭୂମିକାର ସଂଦର୍ଭ ମୁଁ ନିଜେ । ଶେଷରେ ଆଶା କରୁଛି ଯେ ଆମ ସମକାଳୀନ ସାହିତ୍ୟକର୍ମ ଓ ସାହିତ୍ୟବିଚାର କେତେଜଣ ଅଫିସର ଓ ଅଧ୍ୟାପକଙ୍କ ଅସାଧୁ ଚକ୍ରରୁ ଶୀଘ୍ର ମୁକ୍ତ ହୋଇ ପ୍ରକୃତ ଦିଗ୍‌ଦର୍ଶନ ଲାଭ କରିବ । ଏଇ ସୌଖୀନ ଲେଖକ ଗୋଷ୍ଠୀଟି ସମାଜର ବୃହତ୍ତର ଅଂଶରୁ ପ୍ରାୟ ବିଛିନ୍ନ ଏବଂ ନିଜ ନିଜର ବୈଠକଖାନାର ଆଶ୍ୱସ୍ତ ନିଖିଳ ମଧ୍ୟରେ ହିଁ ବନ୍ଦୀ । ପ୍ରାକ୍-ସ୍ୱାଧୀନ ଯୁଗରେ ଏମାନଙ୍କ ମଧ୍ୟରୁ ଅଧିକାଂଶ ଆମ ଜାତୀୟ ଚେତନା ଓ ଗଣମାନସକୁ ପଛରୁ ଛୁରୀ ମାରିବାକୁ ପଛଉ ନଥିଲେ । ଆଜି ସେ ତୁଟା ପ୍ରାଇଜ୍ ଲୋଭରେ ଏମାନଙ୍କର ଦେଶପ୍ରୀତି ଓ ସାହିତ୍ୟପ୍ରୀତି ହଠାତ୍ କୂଳ ଲଂଘନ କରିଛି ।

ଶେଷରେ ମୋର ଆଶା, ଏ କବିତା ସଂକଳନଟି ଉପେନ୍ଦ୍ର ଭଞ୍ଜଙ୍କ ଭାଷାରେ 'ଆଖୁ ଅନଳ ଓ ହାସରେ ବିନାଶ ନ ଲଭି (ଅର୍ଥାତ୍ ଉଈ, ନିଆଁ ଓ ଅସ୍ରପା ଦ୍ୱାରା ବିନଷ୍ଟ ନ ହୋଇ) ଅଜ୍ଞ ଓ ଖଳ ଲୋକଙ୍କ କାନରେ ନ ପଡ଼ି, ଉତ୍ତମ ଜନଙ୍କ ଦ୍ୱାରା ଦୂଷିତ ନ ହୋଇ ସର୍ବଦେଶରେ ପ୍ରକାଶ ହେବ ?'

ଜୁନ୍ ୧୨, ୧୯୭୫
ମିସନ୍ ରୋଡ୍
କଟକ-୧

ସଚ୍ଚିଦାନଂଦ ରାଉତରାୟ

Published by : Diganta Prakashan, Mission Road, Cuttack-1
Printed by : Chandimata Printers & Stationers,
Haripur Road, Cuttack-1.
JUNE 15, 1975